ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ଓଡ଼ିଆ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ମାର୍ଚ୍ଚ ୨୦୨୩ ସଂଖ୍ୟା

କଥା ଓ କାହାଣୀ

ପଦ୍ୟ ଓ କବିତା

ହାସ୍ୟ ଓ ବ୍ୟଙ୍ଗ

ଇତିହାସ ଓ ପ୍ରବଂଧ

ଅନୁବାଦ ସାହିତ୍ୟ

ସମ୍ବଲପୁରୀ ଲେଖା

ଶିଶୁ କଥା

ଏବଂ

ଆହୁରି ଅନେକ



ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ
ପ୍ରତିଷ୍ଠାତା ଓ ସଂପାଦକ, ଆହ୍ୱାନ ଇ-ପତ୍ରିକା

 

# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆ ମାସିକ ସାହିତ୍ୟ ଇ-ପତ୍ରିକା



ଆସ ଓଡ଼ିଆରେ ଲେଖିବା, ପଢ଼ିବା ଓ ପଢ଼ାଇବା


ପ୍ରତିଷ୍ଠାତା - ସମ୍ପାଦକ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡି.ଏମ୍.ସି.ଏଚ୍., ପି.ଜି.ଡି.ଏଚ୍.ଏମ୍

ଫ୍ଲାଟ୍ ସଂ: ୨୦୨, ଚିଦାନନ୍ଦ ଆବାସ, ବୀମା ନଗର, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଭ୍ରାମ୍ୟଭାଷ : ୭୦୦୮୫୬୭୦୮୫ | ଇମେଲ୍ : aahwaan@gmail.com

 

'ଆହ୍ୱାନ' ଇ-ପତ୍ରିକାରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖା ଗୁଡ଼ିକ ହିଁ ଲେଖାର ମାନ ଏବଂ ଭାଷା ତଥା ଉପାଦେୟତା ଆଧାରରେ ଚୟନ କରାଯାଇଥାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ । ଲେଖାରେ ଦିଆଯାଇଥିବା ସମସ୍ତ ତଥ୍ୟ ଏବଂ ବିଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତି ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ପ୍ରତ୍ୟେକ ଲେଖାକୁ ଭଲଭାବରେ ପଢ଼ିବା ଏବଂ ବୁଝିବାପରେ ହିଁ ପ୍ରକାଶନ ହେତୁ ନିର୍ବାଚନ କରାଯାଇଥାଏ । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ରହିବ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦି)ରେ ପ୍ରକାଶିତ କରିବା ଅପରାଧ ବୋଲି ଧରିନିଆଯିବ । ପ୍ରତ୍ୟେକ ଲେଖା ଉପରେ ସମ୍ପୂର୍ଣ୍ଣ ଅଧିକାର ଲେଖକଙ୍କର ରହିବ, ସେ ଚାହିଁଲେ ତାହାକୁ ଫେସବୁକ ଏବଂ ଟ୍ୱିଟର ଆଦି ଗଣମାଧ୍ୟମରେ କିମ୍ବା ଅନ୍ୟ ମାଧ୍ୟମରେ ପ୍ରକାଶିତ କରିପାରିବେ ।




**ପବିତ୍ର ଉତ୍କଳଦିବସ ଉପଲକ୍ଷେ ଆହ୍ୱାନ ଇ-ପତ୍ରିକାର ସମସ୍ତ ଶୁଭେଚ୍ଛୁଙ୍କୁ ହାର୍ଦ୍ଦିକ ଅଭିନନ୍ଦନ**

 

# ସୂଚୀପତ୍ର

 

## ପ୍ରବନ୍ଧ ବିଭାଗ ୧୨୨



## ବିଶେଷ ସୂଚନା ୧୬୫

 



ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

# ସମ୍ପାଦକଙ୍କ କଲମରୁ...

ନମସ୍କାର

ଆହ୍ୱାନ ଇ-ପତ୍ରିକାର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରେମୀ ପରିବାରର ସମସ୍ତ ସଦସ୍ୟଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଏବଂ ଶୁଭେଚ୍ଛା । ମାର୍ଚ୍ଚ ମାସର ଆହ୍ୱାନ ଇ-ପତ୍ରିକା ଆପଣ ମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିବା ବେଳେ କ୍ରମବର୍ଦ୍ଧିଷ୍ଣୁ ଉତ୍ତାପ ଏବଂ ରାଜନୈତିକ ବାତାବରଣ ହେତୁ ସାମାଜିକ ସଂହତିରେ ହେଉଥିବା କ୍ଷୟ ଇତ୍ୟାଦିରୁ ମହାପ୍ରଭୁ ଶ୍ରୀ ଜଗନ୍ନାଥ ଆମ ସମସ୍ତଙ୍କୁ ରକ୍ଷା କରନ୍ତୁ ବୋଲି ପ୍ରାର୍ଥନା କରୁଛି । ଦୀର୍ଘ ଏକ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ଋଷ ଏବଂ ୟୁକ୍ରେନ୍ ମଧ୍ୟରେ ଚାଲିଥିବା ଯୁଦ୍ଧ ହେତୁ ବୈଶ୍ୱିକ ପରିବେଶ ବେଶ ପ୍ରଭାବିତ । ଚଳିତ ବର୍ଷ ଫେବୃଆରୀ ମାସରୁ ହିଁ ଓଡ଼ିଶାର ତାପମାତ୍ରାରେ ଅହେତୁକ ବୃଦ୍ଧି ଏହାର ପ୍ରମାଣ । ଅନୁମାନ କରାଯାଉଛି ଯେ ଚଳିତ ବର୍ଷ ଗ୍ରୀଷ୍ମ ଋତୁରେ ଓଡ଼ିଶାର ତାପମାତ୍ରା ଅନ୍ୟ ବର୍ଷମାନଙ୍କ ତୁଳନାରେ ଅଧିକ ବୃଦ୍ଧି ପାଇବ । ଦେଖାଯାଉ କଣ ହେଉଛି । ଆପଣମାନେ ସାବଧାନ ରହିବେ । ଅଂଶୁଘାତ ଜନିତ ମୃତ୍ୟୁ ଏହିବର୍ଷ ଏକ ନୂତନ ସ୍ତରରେ ପହଞ୍ଚିପାରେ ବୋଲି ଅନୁମାନ କରାଯାଉଛି, ତେଣୁ ଅତ୍ୟାବଶ୍ୟକ ନ ହେଲେ ଖରାରେ ବାହାରକୁ ବାହାରିବେ ନାହିଁ । ଆସନ୍ତୁ ନିଜ ନିଜ ସ୍ଥାନରେ ସ୍ଥିର ହୋଇ ଆହ୍ୱାନ

 

ଇପତ୍ରିକାରେ ପ୍ରକାଶିତ କଥାକାହାଣୀ ଓ କବିତା ମାନଙ୍କର ଆନନ୍ଦ ନିଅନ୍ତୁ ।

ମାର୍ଚ୍ଚ ମାସରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ବା ସାଂସ୍କୃତିକ ଭାଷାର ମର୍ଯ୍ୟାଦା ପାଇଥିଲା, ଏଥିପାଇଁ ସାମାଜିକ ଗଣମାଧ୍ୟମ ତତ୍ପର ହୋଇ ଉଠିଥିଲା । ଲୋକମାନଙ୍କ ଓଡିଆ ଭାଷା ପାଇଁ ମମତା ଏବଂ ଓଡିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଦିବସ ପାଳନର ଉତ୍ସାହକୁ ଦେଖିଲେ ଆନନ୍ଦ ଲାଗେ । ଯେତେବେଳେ ଆମେ କହିଥାଉ ଯେ ଓଡ଼ିଆ ଭାଷାପ୍ରତି ବୈମାତୃକ ମନୋଭାବ ହେତୁ ଆମେ ଏହି ଭାଷାକୁ ଯଥେଷ୍ଟ ସମ୍ମାନ ଦେଇ ପାରୁନାହୁଁ, ସେଇ ସମୟରେ କିନ୍ତୁ ଫେସବୁକ୍ ଏବଂ ଟ୍ୱିଟର୍ ପରି ପଟ୍ଟଳମାନଙ୍କରେ ଭାଷା ଦିବସର ଶୁଭେଚ୍ଛା ଓ ଅଭିନନ୍ଦନର ସଂଖ୍ୟା ଦେଖିଲେ ଭାରି ଖୁସି ଲାଗେ । ମାନବ ଜଗତରେ ପ୍ରତ୍ୟେକ ଜାତିର ସ୍ୱତନ୍ତ୍ର ପରିଚୟ କେବଳ ତାହାର ଭାଷା ଏବଂ ଚାଲିଚଳନ ଯୋଗୁଁ ହିଁ ହୋଇଥାଏ । ଭାରତର ଛଅ ଗୋଟି ଶାସ୍ତ୍ରୀୟ ଭାଷା ମଧ୍ୟରେ ଓଡିଆ ଭାଷା ସ୍ଥାନ ପାଇଛି, ଏହା ଦର୍ଶାଏ ଯେ ଆମ ଭାଷା କେତେ ପ୍ରାଚୀନ ଏବଂ କେତେ ସମୃଦ୍ଧ । ଅସମର୍ଥିତ ସୂତ୍ରରୁ ଉଦ୍ଧୃତ ସୂଚନା ଅନୁସାରେ ପୃଥିବୀରେ କାଳେ ଦ୍ୱିତୀୟ ସର୍ବାଧିକ ପାଣ୍ଡୁଲିପି ଓଡ଼ିଆ ଭାଷାରେ ରହିଛି । ଅର୍ଥାତ ଆମ ପୂର୍ବସୂରୀମାନେ ଭାଷା ଓ ସାହିତ୍ୟକୁ ନେଇ ଯେଉଁ ଅନୁଭବ ସୃଷ୍ଟି କରିଦେଇଛନ୍ତି ତାହା ଅନ୍ୟ କୌଣସି ଭାଷାରେ ସମ୍ଭବ ନୁହେଁ । ଆମେ ସେହି ସମୃଦ୍ଧ ଭାଷାର ଦାୟାଦ ହୋଇ ଯଦି ଆମେ ଆମ ନିଜ ଭାଷାକୁ ସମ୍ମାନ ଦେଇ ପାରିବା ନାହିଁ, ତା ହେଲେ ଏହାଠାରୁ ଅଧିକ ଦୁଃଖର ବିଷୟ ବା କଣ ହୋଇପାରେ ? ଚାଲନ୍ତୁ ଆମେ ସମସ୍ତେ ଶପଥ ନେବା, ଓଡିଆ ଭାଷାରେ ଲେଖିବା, ପଢ଼ିବା ଓ ପଢ଼ାଇବା । ଦିନର ଅନ୍ତତଃ କିଛି କ୍ଷଣ ଓଡ଼ିଆ ଭାଷା ପାଇଁ ସମର୍ପିତ ଭାବରେ ଆମେ ଯଦି କାମ କରିବା ଆମ ଭାଷାକୁ ଆମେ ନିଜେ ସମୃଦ୍ଧ କରିବାରେ ସହାୟକ ହୋଇ ପାରିବା । ଯେଉଁ ସାହିତ୍ୟିକ ମାନେ ଓଡ଼ିଆ ଭାଷାରେ

 

ନିଜ ଲେଖା ସବୁ ଲେଖୁଛନ୍ତି ଓ ପ୍ରକାଶିତ କରୁଛନ୍ତି ସେମାନଙ୍କୁ ପ୍ରୋତ୍ସାହନ ଦେବା ଜରୁରୀ । କାରଣ ସେମାନେ ଆମ ଭାଷା ଜଗତକୁ ସମୃଦ୍ଧ କରୁଛନ୍ତି । ସେମାନଙ୍କ ଏହି ଅବଦାନ ଭବିଷ୍ୟତରେ ଆମ ବଂଶଧରଙ୍କୁ ଅଧିକରୁ ଅଧିକ ଓଡ଼ିଆ ସାହିତ୍ୟ ପଢ଼ିବାରେ ସାହାଯ୍ୟ କରିବ ଏଥିରେ ଦ୍ୱିମତ ନାହିଁ ।

ଅନେକ ବର୍ଷର ପ୍ରତୀକ୍ଷା ପରେ, ଭାରତ ସରକାର ଦେଶର ଅନେକ ଛୋଟ ଛୋଟ ସହରକୁ ବିମାନ ସେବା ଦ୍ୱାରା ସଂଯୋଗ କରିବା ଯୋଜନାରେ ବ୍ରହ୍ମପୁର ସହରକୁ ଅନ୍ତର୍ଭୁକ୍ତ କରିବା ଖବର ଦକ୍ଷିଣ ଓଡ଼ିଶାବାସୀଙ୍କ ପାଇଁ ଅତ୍ୟନ୍ତ ଆନନ୍ଦର ମୁହୂର୍ତ୍ତ ଥିଲା । ବାସ୍ତବିକ ଯେଉଁ ଜିଲ୍ଲାରେ ରାଜ୍ୟର ସବୁଠାରୁ ଅଧିକ ଲୋକ ବସବାସ କରନ୍ତି ଏବଂ ଖୋଦ୍ ମୁଖ୍ୟମନ୍ତ୍ରୀ ଯେଉଁ ଜିଲ୍ଲାରୁ ନିର୍ବାଚିତ ହୋଇଛନ୍ତି, ସେଇ ଜିଲ୍ଲାର ଅଧିବାସୀଙ୍କୁ ବିମାନସେବା ନ ମିଳିପାରିବା ଦୁଃଖର ବିଷୟ । ସେ ଯା ହେଉ ବିଳମ୍ବରେ ହେଉ ପଛେ ଏହି ସେବାର ଆରମ୍ଭ ହୋଇଛି ଏବଂ ଆଶା କରୁଛୁ ଓଡିଶାର ସମସ୍ତ ସହରକୁ ବିମାନ ସେବା ଯୋଗାଇ ଦିଆଯିବ ।

ଚଳିତ ମାସ ରାଜନୈତିକ ଘଟଣା ଦୃଷ୍ଟିରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ନଥିଲେ ସୁଦ୍ଧା, ଭାରତର ଜଣେ ନିର୍ବାଚିତ ସାଂସଦ ବିଦେଶ ମାଟିରେ ରହି ଭାରତୀୟ ଗଣତନ୍ତ୍ରକୁ ଯେଉଁଭଳି ଅପମାନିତ କରିଲେ ତାହା ଚର୍ଚ୍ଚାର ବିଷୟ ପାଲଟିଛି । କଂଗ୍ରେସ ଦଳର ସଦସ୍ୟ ରାହୁଲ ଗାନ୍ଧୀ ଏକ ବିଶାଳ କାର୍ଯ୍ୟକ୍ରମ ଆୟୋଜନ କରି ଭାରତ ଯୋଡ଼ୋ ଯାତ୍ରା କରିଲେ । କନ୍ୟାକୁମାରୀ ଠାରୁ କଶ୍ମୀର ପର୍ଯ୍ୟନ୍ତ ଏହି କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ଦଳ ତରଫରୁ ଦିଆଯାଇଥିବା ସୂଚନା ଅନୁସାରେ ଏହି କାର୍ଯ୍ୟକ୍ରମକୁ ବ୍ୟାପକ ଜନସମର୍ଥନ ମଧ୍ୟ ମିଳିଥିଲା ବୋଲି କୁହାଯାଉଛି । ଅବଶ୍ୟ ଏହି କାର୍ଯ୍ୟକ୍ରମରେ ଅନେକ ଦେଶ ବିରୋଧୀ ବ୍ୟକ୍ତି ରାହୁଲ ଗାନ୍ଧୀଙ୍କ ସହ ଯୋଗ ଦେବାର ଅଭିଯୋଗ ମଧ୍ୟ ହୋଇଥିଲା । ଭାରତ ଯୋଡ଼ୋ

 

ଯାତ୍ରା ସମୟରେ ରାହୁଲ ଗାନ୍ଧୀଙ୍କର ଯେଉଁ ପରିବର୍ତ୍ତନ ସମସ୍ତଙ୍କୁ ଚମକାଇ ଦେଇଥିଲା ତାହା ଥିଲା ତାଙ୍କର ଦାଢ଼ୀ । କେହି କେହି ସେ ସଦ୍ଦାମ ହୁସେନ୍ ଭଳି ଦେଖାଯାଉଛନ୍ତି ବୋଲି ମନ୍ତବ୍ୟ ଦେଇଥିଲା ବେଳେ ଅନେକେ ଏହାକୁ ନେଇ ବ୍ୟଙ୍ଗ କରିଥିଲେ, ଯେ ଦାଢ଼ୀ ବଢ଼ାଇ ସେ ନିଜକୁ ଅଧିକ ଅନୁଭବୀ ଏବଂ ଯୋଗ୍ୟତାସମ୍ପର୍ନ୍ନ ବୋଲି ଦେଖାଇବାକୁ ଚେଷ୍ଟା କରୁଛନ୍ତି । ସେ ଏହି ଯାତ୍ରା ସମୟରେ ମନ୍ଦିର ଦର୍ଶନରେ ବି ଯାଇଥିଲେ । କାର୍ଯ୍ୟକ୍ରମର ସମାପନ ସେ କାଶ୍ମୀରରେ କରିବା ସମୟରେ ବିପୁଳ ଜନସମାଗମ ହୋଇଥିଲା । କାର୍ଯ୍ୟକ୍ରମ ସରିବା ପରେ ସେ ନିଜ ଭଉଣୀ ପ୍ରିୟଙ୍କା ଗାନ୍ଧୀ ଭଦ୍ରାଙ୍କ ସହ ବରଫ ପଡ଼ିଆରେ ଖେଳୁଥିବାର ଦୃଶ୍ୟ ଗଣମାଧ୍ୟମରେ ଅନେକ ମିମ୍ ସୃଷ୍ଟି କରିଥିଲା । ଯେଉଁ ରାଜ୍ୟରେ ଦିନେ ଭାରତର ଜାତୀୟ ପତାକା ଲଗାଇବାକୁ ଅପରାଧ ବୋଲି ଧରି ନିଆଯାଉଥିଲା ସେଇଠି ବର୍ତ୍ତମାନ ନିର୍ବିରୋଧ ଲୋକମାନେ ଜାତୀୟ ପତାକା ଲଗାଉଛନ୍ତି, ରାଜ୍ୟର ସୁରକ୍ଷା ଏତେ ଭଲ ହୋଇଛି ଯେ ବିଗତ ଅନେକ ବର୍ଷର ପର୍ଯ୍ୟଟନର ରେକର୍ଡ୍ ଭାଙ୍ଗି ଯାଇଛି । କାଶ୍ମୀରକୁ ପର୍ଯ୍ୟଟକ ମାନଙ୍କ ସଂଖ୍ୟାରେ ଅହେତୁକ ବୃଦ୍ଧି ହୋଇଛି । ଏହା ସ୍ଥାନୀୟ ଅଧିବାସୀଙ୍କୁ ରୋଜଗାରକ୍ଷମ କରିବା ସହ ସେମାନଙ୍କୁ ସମ୍ମାନର ସହ ବଞ୍ଚିବାର ଉପାୟ ଦେଖାଇଛି । ଏହି ସବୁ ପରିବର୍ତ୍ତନ ପଛରେ ଶ୍ରୀ ନରେନ୍ଦ୍ର ମୋଦୀଙ୍କ ନେତୃତ୍ୱରେ ବର୍ତ୍ତମାନର ଭାରତ ସରକାରଙ୍କ ପ୍ରଚ୍ଛନ୍ନ ହାତ ରହିଛି । ଏହା ମାନିବାକୁ ହେବ । ଦିନେ ଆତଙ୍କବାଦର ଶୀକାର ଜମ୍ମୁକାଶ୍ମୀର ଏବେ ଶାନ୍ତ ଏବଂ ସୁନ୍ଦର ରାଜ୍ୟରେ ପରିଣତ ହୋଇଛି । ସଦ୍ୟ ମିଳୁଥିବା ଖବର ଅନୁସାରେ ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ମେହବୁବା ମୁଫ୍‌ତି, ଏବେ ମନ୍ଦିର ଦର୍ଶନ କରିବାକୁ ଯାଇ ଶିବଲିଙ୍ଗରେ ଜଳାଭିଷେକ କରି ଆସିଛନ୍ତି । ଏହି ପରିବର୍ତ୍ତନ ପାଇଁ ଆମେ କାହାକୁ ଧନ୍ୟବାଦ ଦେବା ଆପଣ ନିଜେ ଜାଣନ୍ତି । ଭାରତ ଯୋଡ଼ୋ ଯାତ୍ରା ସମାପନ ପରେ ରାହୁଲ

 

ଗାନ୍ଧୀ ଯାହା କହିଥିଲେ ତାହାର ଠିକ୍ ବିପରୀତ କଥା ଏବେ ସେ ବିଦେଶରେ ରହି କହୁଛନ୍ତି ।

ଏହା ତ ସ୍ୱାଭାବିକ ଏବଂ ଜଣା ପଡୁଛି ଯେ କଂଗ୍ରେସ ଦଳ ଜାଣିଶୁଣି ରାହୁଲ ଗାନ୍ଧୀଙ୍କୁ ନେଇ ବିଦେଶରେ ବାରମ୍ବାର ଏହିଭଳି ପ୍ରେସ୍ ମିଟ୍ ଏବଂ କାର୍ଯ୍ୟକ୍ରମ ଆୟୋଜନ କରୁଛନ୍ତି, କାରଣ ସେମାନେ ଜଣାଇବାକୁ ଚାହୁଁଛନ୍ତି ଯେ ଭାରତରେ ମୋଦୀଙ୍କୁ ସମ୍ମୁଖୀନ ହେବାଭଳି ବ୍ୟକ୍ତିତ୍ୱ କେବଳ ରାହୁଲ ଗାନ୍ଧୀଙ୍କର ଅଛି । ଏବଂ ରାହୁଲ ଗାନ୍ଧୀଙ୍କୁ ଭାରତ ସଂସଦର ମୁଖ୍ୟ ବିପକ୍ଷ ଦଳ ନେତା ଭାବରେ ପ୍ରଦର୍ଶିତ କରିବାର ଅଭିଳାଷ ସ୍ପଷ୍ଟ ଭାବରେ ଜଣା ପଡୁଛି । ଭାଜପା ବ୍ୟତୀତ ଅନ୍ୟ କୌଣସି ଦଳ ରାହୁଲ ଗାନ୍ଧୀଙ୍କ ବ୍ରିଟେନ୍ ଗସ୍ତକୁ ନେଇ କୌଣସି ପ୍ରତିକ୍ରିୟା ଦେଇନାହାନ୍ତି ।

ଭାରତରେ ଗଣତନ୍ତ୍ର ବିପଦରେ ଅଛି ବୋଲି ରାହୁଲ ଗାନ୍ଧୀ ପ୍ରଥମ ଥର କହିନାହାନ୍ତି, ସେ ଯେତେ ବେଳେ ବି ବିଦେଶରେ କୌଣସି କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଛନ୍ତି ସବୁବେଳେ ସେଇ ଗୋଟିଏ କଥାକୁ ବାରମ୍ବାର ଶୁଣାଇଛନ୍ତି । ହେଲେ ଚଳିତ ସଂସ୍କରଣରେ ସେ ମନ୍ତବ୍ୟ ଦେଇଥିଲେ ଯେ ଭାରତର ଗଣତନ୍ତ୍ର ବିପଦରେ ଥିବା ବେଳେ କେମିତି ଆମେରିକା ଓ ବ୍ରିଟେନ୍ ଭଳି ଦେଶ ନିରବରେ ରହିଛନ୍ତି ? ଏମିତି କହିବା ପଛରେ ରାହୁଲ ଗାନ୍ଧୀଙ୍କ ମନରେ କଣ ଅଛି କହି ହେଉନି ! ସେ କଣ କହିବାକୁ ଚାହାନ୍ତି ? ପରୋକ୍ଷ ଭାବରେ ସେ ଚାହୁଁଛନ୍ତି କି ଆମେରିକା ଓ ବ୍ରିଟେନ୍ ଭଳି ଦେଶ ଭାରତର ଅଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରନ୍ତୁ ? ଯଦି ସେ ଏଭଳି କହୁଥାନ୍ତି ତା ହେଲେ ଏହା ଆମ ଦେଶ ପ୍ରତି ଅସମ୍ମାନ ନୁହେଁ କି ?

ସେ ଆହୁରି ମନ୍ତବ୍ୟ ଦେଇଛନ୍ତି ଯେ ଭାରତରେ କୌଣସି ବିଷୟକୁ ନେଇ ସଂସଦରେ

 

ସୁସ୍ଥ ଚର୍ଚ୍ଚା ହେଉନାହିଁ । ବହୁତ ବଡ଼ ବଡ଼ ନିଷ୍ପତ୍ତି ସବୁ ବିନା କୌଣସି ସୂଚନାରେ ସରକାର ଲାଗୁ କରି ଦେଉଛନ୍ତି । ଏବଂ ଗଣମାଧ୍ୟମ ମଧ୍ୟ ସରକାରଙ୍କ ମୁଖପାତ୍ର ଭଳି କାର୍ଯ୍ୟ କରୁଛନ୍ତି । ସେଇଥିପାଇଁ କଂଗ୍ରେସ ଦଳ ତରଫରୁ ଲୋକଙ୍କ ସହ ସିଧା ସଳଖ ଯୋଗାଯୋଗ କରିବା ପାଇଁ ଭାରତ ଯୋଡ଼ୋ ଯାତ୍ରାର ଆୟୋଜନ କରାଯାଇଥିଲା ।

ଅନ୍ୟ ଏକ କାର୍ଯ୍ୟକ୍ରମରେ ସେ ଭାଷଣ ଦେଉଥିବା ବେଳେ ମାଇକ୍ରୋଫୋନ୍ କାମ ନ କରିବା ପରେ କହିଥିଲେ ଯେ ଭାରତୀୟ ସଂସଦରେ ଶାସକ ଦଳ ସେମାନଙ୍କ ମାଇକ୍ କୁ ବନ୍ଦ କରି ଦେଉଛନ୍ତି ଏବଂ ସେମାନଙ୍କ କଥାକୁ କେହି ଶୁଣୁନାହାନ୍ତି । ଏହା ତାଙ୍କ ସହ ଅନେକ ଥର ହୋଇଛି ।

ସେ କହିଥିଲେ ଯେ ଭାରତରେ ଯାତ୍ରା କରୁଥିବା ସମୟରେ ସେ ଜାଣିପାରିଥିଲେ ଯେ ଭାରତରେ ଦଳିତ ସମ୍ପ୍ରଦାୟ, ଆଦିବାସୀ ଏବଂ ସଂଖ୍ୟାଲଘୁଙ୍କ ଉପରେ କିପରି ଅତ୍ୟାଚାର ହେଉଛି । ଏହି ବିଷୟରେ ଅନେକ ଆଲେଖ୍ୟ ଅନ୍ତର୍ଜାତୀୟ ପତ୍ରପତ୍ରିକାରେ ବାରମ୍ବାର ପ୍ରକାଶିତ ହେଉଛି ବୋଲି ମଧ୍ୟ ମନ୍ତବ୍ୟ ଦେଇଥିଲେ ।

ଯାତ୍ରା ସରିବା ପରେ ସେ ଇଟାଲୀ ଗସ୍ତରେ ଯାଇଥିଲେ ଏବଂ ସେଇଠି ଗଣମାଧ୍ୟମକୁ ଦେଇଥିବା ବକ୍ତବ୍ୟରେ ଭାରତ ସରକାରଙ୍କ ଉପରେ ଅନେକ ଅଭିଯୋଗ ଓ ଆକ୍ଷେପ କରିଥିଲେ । ଏହାପରେ ସେ ବ୍ରିଟେନ୍ ଗସ୍ତରେ ଯାଇ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଆୟୋଜିତ ସମାବେଶରେ ସମ୍ବୋଧନ ଦେଇ ଭାରତରେ ଗଣତନ୍ତ୍ର ବିପଦରେ ରହିଥିବା କଥା କହିବା ସହ, ସରକାର କିଭଳି ବିରୋଧୀ ମାନଙ୍କୁ କହିବାକୁ ଦେଉନାହାନ୍ତି, ଗଣମାଧ୍ୟମକୁ ଅକ୍ତିଆରରେ ରଖିଛନ୍ତି, ଅର୍ଦ୍ଧେକ ଜନସଂଖ୍ୟା ସବୁବେଳେ ନିଷ୍ପେଶିତ ହୋଇ ରହୁଛନ୍ତି, ଇତ୍ୟାଦି ଅନର୍ଗଳ ଭାଷଣ ଦେଇଛନ୍ତି । ତାଙ୍କର ଭାଷଣ ଶୁଣୁଥିବା ବ୍ୟକ୍ତିମାନେ ମଧ୍ୟ ବେଳେ

 

ବେଳେ ଚିନ୍ତାରେ ପଡ଼ି ଯାଉଥିବେ ସେ କେଉଁ ଧରଣର ନିଶା ସେବନ କରି ଏ ସବୁ କହୁଛନ୍ତି । ବୈଶ୍ୱିକ ସ୍ତରରେ ନରେନ୍ଦ୍ର ମୋଦୀଙ୍କ ସ୍ଥାନ ସର୍ବୋଚ୍ଚ ହୋଇଥିବା ବେଳେ ଏବେ ପ୍ରାୟ ବିଶ୍ୱର ସମସ୍ତ ଦେଶ ଭାରତ ଆଡ଼କୁ ଚାହିଁ ରହିଥିବା ବେଳେ ଭାରତରେ ଗଣତନ୍ତ୍ର ବିପଦରେ ଅଛି କହିବା କେତେ ଯେ ଅଯୌକ୍ତିକ ତାହା ସମସ୍ତେ ବୁଝି ପାରୁଥିବେ । ଯେତେବେଳେ ବିଶ୍ୱର ପ୍ରାୟ ସମସ୍ତ ଦେଶର ଅର୍ଥନୀତି ଦୋଳାୟମାନ ସ୍ଥିତିରେ ପହଞ୍ଚି ସାରିଛି, ସେତେବେଳେ ଭାରତ ଏକ ମାତ୍ର ଅର୍ଥନୀତି ଯାହାର ପ୍ରଶଂସା ବିଶ୍ୱ ବ୍ୟାଙ୍କ, ଅନ୍ତରାଷ୍ଟ୍ରୀୟ ମୁଦ୍ରା କୋଷ ଆଦି କରୁଛନ୍ତି । ଆଶା କରାଯାଉଛି ଯେ ଆଉ କିଛି ବର୍ଷରେ ଭାରତ ବିଶ୍ୱର ତୃତୀୟ ସର୍ବବୃହତ ଅର୍ଥନୀତିରେ ପରିଣତ ହୋଇଯିବ । ଏହିଭଳି ଉନ୍ନତିର ସୋପାନରେ ପହଞ୍ଚାଇଥିବା ଭାରତ ସରକାର ବିରୋଧରେ କହୁଥିବା ବେଳେ ରାହୁଲ ଗାନ୍ଧୀ କଣ ସତରେ ନିଜ ସଚେତନ ଅବସ୍ଥାରେ ଥିଲେ ?

ଆଶ୍ଚର୍ଯ୍ୟର କଥା ହେଉଛି, ରାହୁଲ ଗାନ୍ଧୀ ଯେଉଁ ସବୁ ଭାଷଣ ଦେଉଛନ୍ତି, ତାହା ପାଇଁ ଅନେକ ପ୍ରଶ୍ନର ସମ୍ମୁଖୀନ ହେଉଛନ୍ତି କଂଗ୍ରେସ ଦଳର ବିଭିନ୍ନ ମୁଖପାତ୍ରମାନେ । ବିଭିନ୍ନ ଟିଭି ଚ୍ୟାନେଲରେ ସାମୁହିକ ପରିଚର୍ଚ୍ଚାରେ ଅଂଶ ଗ୍ରହଣ ସମୟରେ ସେମାନେ ନିଶ୍ଚୟ ଅସହଜ ମନେ କରୁଥିବେ, ସେଇଥିପାଇଁ କିଛି ପ୍ରବକ୍ତା ଅତ୍ୟଧିକ ହିଂସ୍ରୁକ ଏବଂ ଉତକ୍ଷିପ୍ତ ହୋଇ ବ୍ୟବହାର କରିବା ଦେଖାଯାଉଛି । ଯେତେବେଳେ କୌଣସି ଅଭିଯୋଗର ଉତ୍ତର ସେମାନେ ପାଉନାହାନ୍ତି, ଅବାନ୍ତର ଯୁକ୍ତି ସବୁ କରୁଛନ୍ତି । ମିଛ ତଥ୍ୟ ଉପସ୍ଥାପନ କରି ସରକାରଙ୍କୁ ଭୁଲ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରୁଛନ୍ତି ।

ସୂଚନାଯୋଗ୍ୟ ଯେ ବିଗତ ମାସରେ ଆମେରିକାରୁ ପ୍ରକାଶିତ ଏକ ତଥ୍ୟରେ ଅଦାନୀ ସମୁହ ଉପରେ ବ୍ୟାପକ ଅର୍ଥ ହେରଫେର କରୁଥିବା ନେଇ ଅଭିଯୋଗ ଆସିଥିଲା ।

 

ହିଣ୍ଡେନବର୍ଗ୍ ନାମକ ଏହି ସଂସ୍ଥା କାହିଁକି ଏବଂ କିପରି ଅଦାନୀ ସମୁହଙ୍କ ବ୍ୟାପାର ଉପରେ ଗବେଷଣା କରୁଥିଲା ତାହା କହିବା ସମ୍ଭବ ନୁହେଁ । କିନ୍ତୁ ଏହାପରେ ପରେ ଭାରତରେ ବିରୋଧୀଦଳମାନେ ପ୍ରଖର ଭାବରେ ପ୍ରଧାନମନ୍ତ୍ରୀଙ୍କୁ ଅଦାନୀଙ୍କୁ ସୁହାଇବା ଭଳି ପଲିସି କରୁଥିବା କଥା କହି ଭର୍ତ୍ସନା କରିବାକୁ ଲାଗିଲେ । ମାମଲା ସୁପ୍ରିମ କୋର୍ଟରେ ଥିବା ସତ୍ତ୍ୱେ ସରକାର ଏହାକୁ ନେଇ କାହିଁକି କୌଣସି ମନ୍ତବ୍ୟ ପାର୍ଲିଆମେଣ୍ଟରେ ଉପସ୍ଥାପନ କରୁନାହାନ୍ତି କହି, ଅନେକ ହଟଗୋଳ କରୁଛନ୍ତି । ଅବଶ୍ୟ ହିଣ୍ଡେନବର୍ଗ୍ ରିପୋର୍ଟ୍ ପ୍ରକାଶିତ ହେବାପରେ ପରେ ଅଦାନୀ ସମୁହଙ୍କ ଶେୟାର ସୁଚକାଙ୍କରେ ନିମ୍ନଗାମୀ ସ୍ତର ଦେଖାଯାଇଥିଲା ଏବଂ ଅଦାନୀ ସମୁହରେ ଭାରତୀୟ ଜୀବନ ବୀମା ଏବଂ ରାଷ୍ଟ୍ରାୟତ କିଛି ବ୍ୟାଙ୍କ ଅର୍ଥ ନିବେଶ କରିଥିବା ହେତୁ ସେଇ ସବୁ ଅର୍ଥ ବୁଡିଯିବ ବୋଲି ପ୍ରଚାର କରାଗଲା । ଉଭୟ ଏଲଆଇସି ଏବଂ ରିଜର୍ଭ ବ୍ୟାଙ୍କ ଏହି ମାମଲାରେ ସ୍ୱଷ୍ଟୀକରଣ ଦେଇ କହିଥିଲେ ଯେ ଏହି ରିପୋର୍ଟ୍ ପ୍ରକାଶିତ ହେବା ପରେ ମଧ୍ୟ ସେମାନଙ୍କ ଅନ୍ତରୀଣ ବ୍ୟାପାରରେ କୌଣସି ପ୍ରଭାବ ପଡ଼ିବ ନାହିଁ, ବିରୋଧୀ ଦଳ ଆଉ କୌଣସି ତଥ୍ୟ ନ ପାଇ, ଲୋକଙ୍କ ମଧ୍ୟରେ ଜୀବନ ବୀମାରେ ଏବଂ ବ୍ୟାଙ୍କରେ ରଖିଥିବା ଅର୍ଥ ମିଳିବ ନାହିଁ ବୋଲି କୁପ୍ରଚାର କରାଗଲା । କେଜାଣି ଏହାର ପ୍ରଭାବ କେମିତି ହୋଇଥାନ୍ତା କିନ୍ତୁ ବର୍ତ୍ତମାନର ସଚେତନ ଉପଭୋକ୍ତାମାନେ ବୋଧହୁଏ ଏହାକୁ ଗମ୍ଭୀରତାର ସହ ନେଲେ ନାହିଁ । କିନ୍ତୁ କୌଣସି ନା କୌଣସି ଉପାୟରେ ଶାସନରେ ଥିବା ଦଳକୁ ଅସ୍ଥିର କରିବାକୁ ବିରୋଧୀମାନେ କେବଳ ଗୋଟିଏ କଥାକୁ ସମସ୍ତ ଉପାୟରେ ଉପସ୍ଥାପନ କରିବାକୁ ପଛାଉ ନାହାନ୍ତି । କୁହାଯାଇଛି, ଯେ ଯଦି ମିଥ୍ୟାକୁ ମଧ୍ୟ ବାରମ୍ବାର ଉପସ୍ଥାପନ କରାଯାଏ ତାହେଲେ ଜନମାନସରେ ତାହା ସତ୍ୟର ଭ୍ରମ ସୃଷ୍ଟି କରିଥାଏ । ବିରୋଧୀ ଦଳ ଏବଂ ବିଶେଷ କରି କଂଗ୍ରେସ ବୋଧହୁଏ

ଏହାକୁ ସତ୍ୟ ବୋଲି ମାନିନେଇଛି । କିନ୍ତୁ ସୋସିଆଲ୍ ନେଟୱର୍କିଂର ଏହି ଯୁଗରେ ଲୋକମାନେ ସଚେତନ ହେଲେଣି । ଆଉ ବର୍ଷକ ପରେ ପୁଣିଥରେ ଭାରତରେ ସର୍ବସାଧାରଣ ନିର୍ବାଚନ ଆୟୋଜିତ ହେବ ଏବଂ ସେଇଥିପାଇଁ ବିରୋଧୀ ଦଳମାନେ କଳବଳ କୌଶଳ ଲଗାଇ ମୋଦୀଙ୍କ ଶାସନକୁ ଅସ୍ଥିର କରିବାକୁ ପ୍ରଚେଷ୍ଟା କରୁଛନ୍ତି ।

ବିଗତ ଦିନର ଆଉ ଏକ ପ୍ରମୁଖ ଖବର ହୋଇଥିଲା, ଦିଲ୍ଲୀ ସରକାରରେ ଥିବା ଶିକ୍ଷା ମନ୍ତ୍ରୀ ମନିଷ ସିଶୋଦିଆଙ୍କ ଗିରଫଦାରୀ । ଦିଲ୍ଲୀର ମଦ ବିକ୍ରୟ ପଲିସିରେ ବ୍ୟାପକ ଫେରବଦଳ କରିବା ଏବଂ ଏଥିରେ ବ୍ୟାପକ ଅନିୟମିତତା ସହିତ ଆର୍ଥିକ କାରବାର ହୋଇଥିବା ସନ୍ଦେହରେ ସିଶୋଦିଆଙ୍କୁ ଗିରଫ କରାଯାଇଛି । ଏହା ପୂର୍ବରୁ ଗୁଜୁରାଟ ନିର୍ବାଚନ ସମୟରେ ମଧ୍ୟ ସିଶୋଦିଆଙ୍କୁ ପ୍ରଶ୍ନୋତ୍ତର କରାଯାଇଥିଲା, କିନ୍ତୁ ଗିରଫ କରାଯାଇ ନଥିଲା, ଏବଂ ଏହାକୁ ନେଇ ଆମ୍ ଆଦମୀ ପାର୍ଟି ଭାଜପାକୁ ଆକ୍ଷେପ କରି କହିଥିଲେ ଯେ ଶାସକ ଦଳ ସିବିଆଇ ଏବଂ ଇଡ଼ି ଭଳି ସଂସ୍ଥାର ଦୁରୁପଯୋଗ କରୁଛନ୍ତି । ହେଲେ ସେଇ ମାମଲାର ତଦନ୍ତ ଏକ ନିର୍ଣ୍ଣାୟକ ସ୍ତରରେ ପହଞ୍ଚିବା ପରେ ଏବେ ତାଙ୍କୁ ଗିରଫ କରାଯାଇଛି । ଶୁଣାଯାଉଛି ଏହି ମାମଲା ହଜାର ହଜାର କୋଟି ଟଙ୍କାର ଆର୍ଥିକ ଦେଣନେଣ ହୋଇଛି । ଜଣେ ନେତା କହିଛନ୍ତି ଯେ ଏହି ମାମଲାରେ ଆୟ ହୋଇଥିବା ଟଙ୍କାକୁ ଗୋଆ ଏବଂ ଗୁଜୁରାଟ ନିର୍ବାଚନ ସମୟରେ ଖର୍ଚ୍ଚ କରାଯାଇଛି । ଯାହା ବି ହେଉ, ଭ୍ରଷ୍ଟାଚାର ନିର୍ମୂଳନ ର ମୂଳମନ୍ତ୍ର ନେଇ ଗଠିତ ରାଜନୈତିକ ଦଳର ଦୁଇ ଦୁଇଜଣ ପୁରୁଖା ନେତା ଭ୍ରଷ୍ଟାଚାରର ଅଭିଯୋଗରେ ଜେଲ ଦଣ୍ଡ ଭୋଗୁଥିବା ବେଳେ ଆପ୍ ତରଫରୁ ସିଶୋଦିଆଙ୍କୁ ମହାନ ନେତା ଭାବରେ ପ୍ରଚାର କରାଯାଉଛି । ଦିଲ୍ଲୀର ଶିକ୍ଷା ମଡେଲ୍ ପାଇଁ ସିଶୋଦିଆଙ୍କୁ ଭାଜପା ଶାସକ ଦଳ ଇର୍ଷାକରି ଏଭଳି କରିଛନ୍ତି ବୋଲି କୁହାଯାଉଛି ।

 

ସୂଚନାଯୋଗ୍ୟ ଯେ କେଜରିବାଲ୍ ସରକାରରେ ଥିବା ସମସ୍ତ ମନ୍ତ୍ରୀ ମାନଙ୍କ ହାତରେ ଦାୟିତ୍ୱ ଥିବା ବେଳେ ଖୋଦ୍ କେଜରିବାଲ୍ କୌଣସି ମନ୍ତ୍ରାଳୟର ହିସାବ ନିଜେ ଦେଖୁନାହାନ୍ତି । କିଛି ଲୋକ କହୁଛନ୍ତି ଯେ କାଳେ କେଜରିବାଲ୍ ନିଜେ ହିଁ ଦଳର ସମସ୍ତ ପ୍ରତିପତିଶାଳୀ ନେତାଙ୍କୁ ଆଡ଼େଇ ଦେବାପାଇଁ ଏହା ସବୁ କରୁଛନ୍ତି । ରାଜନୀତିରେ କଣ ହେଉଛି ବା ହେବାକୁ ଯାଉଛି କହିବା ଅସମ୍ଭବ । ଅଭ୍ୟାସଗତ ମିଥ୍ୟା ପ୍ରତିଶ୍ରୁତି ଦେଇ ଜନତାଙ୍କୁ ଠକିବା ସମସ୍ତ ରାଜନୈତିକ ଦଳର ମୁଖ୍ୟ ଅଭ୍ୟାସ ହୋଇ ଗଲାଣି । ଭ୍ରଷ୍ଟାଚାର ଅଭିଯୋଗ ଆସିଲେ ଆଗ ନିଜ ପଦରୁ ଇସ୍ତଫା ଦେବେ ଏବଂ ପରେ ସେମାନଙ୍କ ଉପରେ ତଦନ୍ତ କରିବାକୁ ଦିଆଯିବ ବୋଲି କେଜରିବାଲ୍ କହୁଥିବା ବେଳେ ଏବେ ନିଜର ମନ୍ତ୍ରୀମଣ୍ଡଳର ଦୁଇ ଦୁଇଜଣ ପ୍ରମୁଖ ସହଯୋଗୀ ଜେଲରେ ଥିବା ବେଳେ ସେମାନଙ୍କୁ ସମର୍ଥନ ଜଣାଇ ଗୋଟିଏ ପରେ ଗୋଟିଏ ଭାଷନ ଦେଇ ଚାଲିଛନ୍ତି । ଏହି ସନ୍ଦର୍ଭରେ ସେ ବିଗତ ଦିନରେ ଏକ ରାଜନୈତିକ ସଭାରେ କହିଛନ୍ତି ଯେ ଭାରତର ପ୍ରଧାନମନ୍ତ୍ରୀ ଶିକ୍ଷିତ ବ୍ୟକ୍ତି ହେବା ଉଚିତ ଥିଲା । ଏହା ତାଙ୍କର ମାନସିକ ଦେବାଳିଆ ପଣକୁ ଦର୍ଶାଉଛି । ନରେନ୍ଦ୍ର ମୋଦୀଙ୍କୁ ଅଶିକ୍ଷିତ ବୋଲି କହି ସେ ପ୍ରମାଣ କରି ଦେଉଛନ୍ତି ଯେ ସେ କେତେ ଅସହାୟ ହୋଇ ପଡିଛନ୍ତି । ଯେଉଁ ନେତାଙ୍କୁ ବିଶ୍ୱର ସମସ୍ତ ବଡ଼ ବଡ଼ ଦେଶ ଏବେ ଆଶାର ଦୃଷ୍ଟିରେ ଚାହିଁ ରହିଛନ୍ତି ଏବଂ ବିଶ୍ୱକୁ ଆଗାମୀ ଦିନରେ ଯଦି କେହି ଦିଗଦର୍ଶନ ଦେଇ ପାରେ ସେ କେବଳ ମୋଦୀ ବୋଲି ବାରମ୍ବାର ପ୍ରମାଣିତ ହୋଇ ଆସୁଥିବା ବେଳେ ମୋଦୀଙ୍କ ପ୍ରତି ଅସୂୟା ମନୋଭାବ ବିରୋଧୀ ମାନଙ୍କ ଅସହାୟତାକୁ ପଦାରେ ପକାଇ ଦେଇଛି ।

ଭାରତର ପଡ଼ୋଶୀ ରାଷ୍ଟ୍ର ପାକିସ୍ତାନର ସ୍ଥିତି ବର୍ତ୍ତମାନ ଅତ୍ୟନ୍ତ ଦୟନୀୟ ହୋଇ ସାରିଛି । ସାଧାରଣ ଜନତା ମହଙ୍ଗା ମାଡ଼ ସହି ନପାରି ତ୍ରାହି ତ୍ରାହି କହୁଥିବା ବେଳେ ବିଭିନ୍ନ

 

ବହୁ ରାଷ୍ଟ୍ରୀୟ କମ୍ପାନୀ ସବୁ ନିଜ ନିଜ ବ୍ୟବସାୟ ବନ୍ଦ କରିଦେଇ ବିଦେଶ ଚାଲି ଯିବାକୁ ଶ୍ରେୟସ୍କର ମଣିଲେଣି । ସମସ୍ତ ଖାଉଟି ଦ୍ରବ୍ୟର ଦର ଅହେତୁକ ଭାବରେ ବୃଦ୍ଧି ପାଇଥିବା ବେଳେ, ରାଜନୈତିକ ଅସ୍ଥିରତା ସୃଷ୍ଟି ହୋଇଛି । ଇମ୍ରାନ ଖାନଙ୍କୁ ଗିରଫ କରିବାପାଇଁ ଦେଶର ସର୍ବୋଚ୍ଚ ନ୍ୟାୟାଳୟ ନିର୍ଦ୍ଦେଶ ଦେଇଥିବା ବେଳେ ଇମ୍ରାନ୍ ଖାନଙ୍କ ସମର୍ଥକ ମାନେ ସମଗ୍ର ଦେଶରେ ବ୍ୟାପକ ଅରାଜକତା ସୃଷ୍ଟି କରି ଦେଶର ଶାସକ ଗୋଷ୍ଠିକୁ ଚିନ୍ତାରେ ପକାଇ ଦେଇଛନ୍ତି । ତେଣେ ଏହି ସବୁ ଅସୁବିଧା ମଧ୍ୟରେ ପାକିସ୍ତାନ ସହ ବିମାନ ସେବା ଯୋଗାଇ ଦେଉଥିବା ସଂସ୍ଥା ସବୁ ବନ୍ଦ ହୋଇଗଲାଣି ଏବଂ ବିଦେଶୀ ସଂସ୍ଥା ସବୁ ନିଜ ସେବାକ୍ ବନ୍ଦ କରିବାପାଇଁ ନୋଟିସ୍ ଜାରୀ କରି ସାରିଛନ୍ତି । ଅନ୍ତରାଷ୍ଟ୍ରୀୟ ମୁଦ୍ରା କୋଷରୁ ଋଣ ମିଳିବାର ଆଶା ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲାଣି । ଏହି ସମୟରେ ପାକିସ୍ତାନର ସ୍ୱାସ୍ଥ୍ୟ ସେବା ଅତି ଦୟନୀୟ ସ୍ଥିତିରେ ପହଞ୍ଚି ସାରିଛି । ରୋଗୀଙ୍କ ପାଇଁ ଆବଶ୍ୟକ ଅତ୍ୟାବଶ୍ୟକ ଜୀବନ ରକ୍ଷାକାରୀ ଔଷଧ ବଜାରରେ ମିଳୁନାହିଁ, ବିଦେଶରୁ ଆମଦାନୀ କରିବା ଭଳୀ ସମ୍ବଳ ଦେଶରେ ନାହିଁ ଏବଂ ଔଷଧ ନିର୍ମାତା ମାନଙ୍କୁ ରିହାତି ମିଳୁନାହିଁ । ତେଣୁ ଚିକିତ୍ସକ ସଂଘ ଏହି ମାମଲାକୁ ସମାଧାନ ଶୀଘ୍ର କରିବାପାଇଁ ସରକାରଙ୍କ ନିବେଦନ କରିଛନ୍ତି ।

ପାକିସ୍ତାନର ଉତ୍ତର ପଶ୍ଚିମ ପ୍ରାନ୍ତରୁ ପାକିସ୍ତାନ ଉପରେ ବାରମ୍ବାର ଆତ୍ମଘାତୀ ଆକ୍ରମଣ କରାଯାଉଛି ଏବଂ ଏଥିରେ ବ୍ୟାପକ ଧନଜୀବନ ହାନୀ ହେଉଥିବା ବେଳେ ପାକିସ୍ତାନରେ ଶରଣ ନେଇଥିବା ଆତଙ୍କବାଦୀଙ୍କ ଉପରେ ଏବେ କାହାର ଦୃଷ୍ଟି ପଡ଼ି ଯାଇଛି । ବିଗତ ଦିନରେ ଅନେକ ଅନ୍ତରାଷ୍ଟ୍ରୀୟ ଆତଙ୍କବାଦୀଙ୍କୁ ଅଜଣା ଆତତାୟୀ ମାନେ ଗୁଳି କରି ହତ୍ୟା କରିଛନ୍ତି । କୁହାଯାଉଛି ଯେ ସିନ୍ଧ (ପ୍ରଦେଶ) ସେନା ଦ୍ୱାରା ଏହି ଆକ୍ରମଣ

 

ଓ ହତ୍ୟା କରାଯାଉଛି ଯାହା ପରୋକ୍ଷ ଭାବରେ ଭାରତର ସମର୍ଥନରେ ହେଉଛି । ଏବେ ଖାଲି ଦେଖିବାକୁ ରହିଲା ପାକିସ୍ତାନ ଆଉ କେତେ ଦିନ ତିଷ୍ଠି ରହିପାରୁଛି ।

ବର୍ତ୍ତମାନ ଭାରତରେ ଥଣ୍ଡା ଜନିତ ରୋଗ ବୃଦ୍ଧି ପାଇବାରେ ଲାଗିଛି । ସାଧାରଣ ମେଡ଼ିକାଲ୍ ଭାଷାରେ ହଙ୍ଗକଙ୍ଗ୍ ଫ୍ଲୁ ବୋଲି କୁହାଯାଉଥିବା ଭୂତାଣୁ, ଇନ୍‌ଫ୍ଲୁଏଞ୍ଜା, ଏଚ୍‌୩ଏନ୍‌୨ ବର୍ତ୍ତମାନ ସର୍ବଭାରତୀୟ ସ୍ତରରେ ବିପଦଜନକ ପରିସ୍ଥିତି ସୃଷ୍ଟି କରିଛି । ଥଣ୍ଡା ଜ୍ୱର କରାଉଥିବା ଅନ୍ୟାନ୍ୟ ଭୂତାଣୁ ଏବଂ ଜୀବାଣୁଙ୍କ ଅପେକ୍ଷା ଅଧିକ ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟି କରୁଛି ଏବଂ ରୋଗୀମାନଙ୍କୁ ଅଧିକ ଦିନଧରି ଅସୁସ୍ଥ କରିବା ସହ ହସ୍ପିଟାଲରେ ରହିବା ପାଇଁ ମଧ୍ୟ ବାଧ୍ୟ କରୁଛି ବୋଲି କୁହାଯାଇଛି । ଅକସ୍ମାତ ଅତ୍ୟଧିକ ଶ୍ୱାସ ସଂକ୍ରମଣ ରୋଗର ୯୨ ପ୍ରତିଶତ ରୋଗୀ ଏହି ଭୂତାଣୁ ଦ୍ୱାରା ଆକ୍ରାନ୍ତ ବୋଲି ଜଣା ପଡ଼ିଛି । ନିକଟ ଅତୀତରେ କର୍ଣ୍ଣାଟକ ଏବଂ ହରିଆନାରେ ଦୁଇଜଣ ବ୍ୟକ୍ତି ଏହି ରୋଗର ଶୀକାର ହୋଇ ମୃତ୍ୟୁବରଣ କରିବା ଚିକିତ୍ସକ ଏବଂ ସରକାରଙ୍କ ପାଇଁ ଚିନ୍ତାର ବିଷୟ ହୋଇଛି ।

ପ୍ରତିବର୍ଷ ଭାରତରେ ଜାନୁଆରୀ ଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ମାସ ମାନଙ୍କରେ ଶୀତ ଋତୁର ପ୍ରଭାବ ହେତୁ ଥଣ୍ଡାଜ୍ୱର ସମସ୍ୟା ଦେଖା ଦେଇଥାଏ । ବାତାବରଣ ଅପେକ୍ଷାକୃତ ଶୀତଳ ରହିବା ହେତୁ ମନୁଷ୍ୟ ଶରୀରର ମେଟାବୋଲିଜମ୍ ପ୍ରକ୍ରିୟା ଧିର ହୋଇଯାଏ ଏବଂ ଭୋକ ଶୋଷ କମ ହେବା ହେତୁ ଶରୀରକୁ ଆବଶ୍ୟକୀୟ ରୋଗ ପ୍ରତିରୋଧକ ଉପାଦାନ ମିଳି ପାରେନାହିଁ । ତେଣୁ ଏହି ଦିନମାନଙ୍କରେ ଇନ୍‌ଫ୍ଲୁଏଞ୍ଜା ସମ୍ପର୍କିତ ରୋଗଜୀବାଣୁ ମାନଙ୍କ ପ୍ରାଦୁର୍ଭାବ ବୃଦ୍ଧି ପାଇଥାଏ ।

ଏହି ରୋଗ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିଙ୍କୁ ସାମାନ୍ୟରୁ ଅଧିକ ଜ୍ୱର ହୋଇଥାଏ ଏବଂ ଏହା ସହିତ କାଶ, କଫ, ଶ୍ୱାସ ନେବାରେ ଅସୁବିଧା, ଶ୍ୱାସ ସମୟରେ ଶବ୍ଦ ଇତ୍ୟାଦି ନ୍ୟୁମୋନିଆ

 

ଭଳି ଲକ୍ଷଣ ସବୁ ଦେଖାଦିଏ । ଏହି ଭୂତାଣୁ ପ୍ରଭାବରେ ୧୯୬୮ ମସିହାରେ ହୋଇଥିବା ଏକ ମହାମାରୀରେ ଲକ୍ଷାଧିକ ଲୋକଙ୍କ ଜୀବନହାନୀ ହୋଇଥିଲା । ଚୀନରୁ ଆସିଥିବା ଏହି ଭୂତାଣୁ ହଙ୍ଗକଙ୍ଗ ଫ୍ଲୁ ମହାମାରୀ ଭାବରେ କୁଖ୍ୟାତ ହୋଇଥିଲା ।

ବର୍ତ୍ତମାନ ପରିସ୍ଥିତିରେ ଏହି ଭୂତାଣୁ ଦ୍ୱାରା ସଂକ୍ରମିତ ୧୦ ପ୍ରତିଶତ ରୋଗୀଙ୍କୁ ଅମ୍ଳଜାନ ଦେବାକୁ ପଡୁଛି, ୭% ରୋଗୀ ଆଇସିୟୁ ସେବା ଆବଶ୍ୟକ କରୁଛନ୍ତି, ୯୨% ରୋଗୀଙ୍କୁ ଜ୍ୱର ଜନିତ ସମସ୍ୟା ହେଉଛି, ୨୭% ରୋଗୀ ଶ୍ୱାସ ନେବାରେ କଷ୍ଟ ଅନୁଭବ କରୁଥିବା କଥା ଭାରତୀୟ ଚିକିତ୍ସା ଗବେଷଣା ସଂସ୍ଥାନ ତରଫରୁ କୁହାଯାଇଛି । ଉତ୍ତମ ଏବଂ ପ୍ରଭାବୀ ତ୍ୱରିତ ଚିକିତ୍ସା ରୋଗୀଙ୍କୁ ଅସୁବିଧାରୁ ବଞ୍ଚାଇ ପାରେ ।

ଚଳିତ ବର୍ଷ ଭାରତୀୟ ସିନେମା ପାଇଁ ଏକ ଗୌରବମୟ ବର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ସିନେମା କ୍ଷେତ୍ରରେ ସବୁଠାରୁ ପ୍ରତିଷ୍ଠିତ ପୁରସ୍କାର ଅସ୍କାର, ୨୦୨୩ର ୯୫ତମ ଅକାଦମୀ ପୁରସ୍କାର ସଂସ୍କରଣରେ ଭାରତକୁ ଦୁଇଟି ସଫଳତା ମିଳିଛି । ଶ୍ରେଷ୍ଠ ମୌଳିକ ଗୀତ ଭାବରେ ତେଲୁଗୁ ଚଳଚ୍ଚିତ୍ର ଆରଆରଆର'ର ନାଟୁ ନାଟୁ ଗୀତକୁ ପୁରସ୍କାର ମିଳିଥିବା ବେଳେ ଶ୍ରେଷ୍ଠ ପ୍ରାମାଣିକ ଚଳଚ୍ଚିତ୍ର ଶ୍ରେଣୀରେ ଭାରତୀୟ ଚଳଚ୍ଚିତ୍ର ଦ ଏଲିଫ୍ୟାଣ୍ଟ ଭିସ୍ପରର୍ ପୁରସ୍କୃତ ହୋଇଛି । ନାଟୂ ନାଟୁ ଗୀତ ବିଶ୍ୱସ୍ତରରେ ବହୁ ପ୍ରଶଂସିତ ହୋଇ ସାରିଛି । ଏସ୍ ଏସ୍ ରାଜାମୌଳିଙ୍କ ନିର୍ଦ୍ଦେଶିତ ତେଲୁଗୁ ଚଳଚ୍ଚିତ୍ର ଆରଆରଆର'ର ନାଟୁ ନାଟୁ ଗୀତକୁ ସଂଗୀତକାର ଏମ୍ ଏମ୍ କିରାବାନୀ ସଂଗୀତ ଦେଇଥିଲେ ଏବଂ ଗାୟକ ରାହୁଲ ସିପ୍ଲିଗୁଞ୍ଜ୍ ଏବଂ କାଲା ଭୈରବ କଣ୍ଠଦାନ କରିଛନ୍ତି ।

ବିହାର ରାଜନୀତିରେ ଏବେ ରାମଚରିତମାନସ ର ଝଡ଼ ଚାଲିଛି । ଏଥିପାଇଁ ଜନତା ଦଳ (ୟୁନାଇଟେଡ୍) ଏବଂ ରାଷ୍ଟ୍ରୀୟ ଜନତା ଦଳ ମଧ୍ୟରେ ଶୀତଳ ଯୁଦ୍ଧ ଆରମ୍ଭ ହୋଇଛି

 

ଏବଂ ଏହାର କାରଣ ହେଉଛନ୍ତି ରାଜ୍ୟର ଶିକ୍ଷା ମନ୍ତ୍ରୀ ଚନ୍ଦ୍ର ଶେଖର । ଗତ ଜାନୁଆରୀ ମାସରେ ସେ ଦେଇଥିବା ମନ୍ତବ୍ୟ ହେତୁ ସମଗ୍ର ଦେଶରେ ଅସନ୍ତୋଷର ବାତାବରଣ ସୃଷ୍ଟି ହୋଇଥିଲା । ରାମ ଚରିତ ମାନସରେ ଉଲ୍ଲେଖ ହୋଇଥିବା ପଦ୍ୟ "ଢୋଲ, ଗବାର୍, ଶୁଦ୍ର, ପଶୁ ଔର୍ ନାରୀ, ସବ୍ ହୈ ତାଡ଼ନ୍ କେ ଅଧିକାରୀ"କୁ ସେ ସମାଲୋଚନା କରିବା ସହ ଏହା ଅଶୋଭନୀୟ ତଥା ଏଭଳି ଏକ କାବ୍ୟରେ ଏହାର ସ୍ଥାନ ନାହିଁ ବୋଲି କହିବା ସହ ରାମଚରିତମାନସକୁ ବେଆଇନ ଘୋଷଣା କରିବାକୁ ଦାବୀ କରିଥିଲେ ।

ଏହି ଅଭିଯୋଗ ବିରୋଧରେ ଭାଜପା ତରଫରୁ କୁହାଯାଇଥିଲା ଯେ ଜାତିଗତ ବିଦ୍ୱେଷ ଉଦ୍ଦେଶ୍ୟରେ ଏହିଭଳି ମନ୍ତବ୍ୟ ସବୁ ଦିଆଯାଉଛି । ଯାହାକୁ ଚନ୍ଦ୍ର ଶେଖର ଖଣ୍ଡନ କରି କହିଥିଲେ, ଆରଏସଏସ୍ ମଧ୍ୟ ସମାନ ଚିନ୍ତାଧାରା ରଖେ । ସେ ଯା ହେଉ, ସନାତନ ହିନ୍ଦୁ ଧର୍ମର ଏକ ପ୍ରତିଷ୍ଠିତ ଓ ସମ୍ମାନିତ ଗ୍ରନ୍ଥକୁ ଏହିଭଳି ଭାବରେ ଅପମାନିତ କରିବାର ଉଦ୍ଦେଶ୍ୟ କଣ ହୋଇପାରେ ଆପଣମାନେ ନିଜେ ଚିନ୍ତା କରି ଦେଖନ୍ତୁ ।

ଆଶା କରୁଛି, ଚଳିତ ମାସର ଆହ୍ୱାନ ଆପଣ ମାନଙ୍କୁ ଭଲ ଲାଗିବ । ଗ୍ରୀଷ୍ମର ନିଦାଘ ଦିନକୁ ଦିନ କଠୋର ହେବାକୁ ଲାଗିଲାଣି, ସାବଧାନ ରହନ୍ତୁ । ନିଜ ସ୍ୱାସ୍ଥ୍ୟ ପ୍ରତି ସଚେତନ ହୁଅନ୍ତୁ । ଗାଇଗୋରୁ, ପଶୁପକ୍ଷୀଙ୍କ ପାଇଁ ଜଳ ବ୍ୟବସ୍ଥା କରନ୍ତୁ ।

ଧନ୍ୟବାଦ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା-ସମ୍ପାଦକ, ଆହ୍ୱାନ ଇ-ପତ୍ରିକା

# ଆମ ଓଡ଼ିଆ ପୋଡ଼କାଷ୍ଟ ଚ୍ୟାନେଲ୍

ଆସ ଓଡ଼ିଆରେ ଲେଖିବା, ଶୁଣିବା ଓ ଶୁଣାଇବା
ଓଡ଼ିଆ ସାହିତ୍ୟ
ଆହ୍ୱାନ ଓଡ଼ିଆ ପୋଡ଼କାଷ୍ଟ
କାହାଣୀ । କବିତା । ପ୍ରବନ୍ଧ । ଅତୀତ । ବ୍ୟଙ୍ଗ । ଉପଦେଶ । ଖବର
https://anchor.fm/aahwaan

odiCAST
PROJECT

PRETTY Talks

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକଙ୍କ
କଥା ଜଗତ
ଓଡ଼ିଆ ପୋଡ଼କାଷ୍ଟ

Listen to Odia Podcast on https://anchor.fm/aahwaan

## ଆସ ଓଡ଼ିଆରେ ଲେଖିବା, ପଢ଼ିବା, ଶୁଣିବା ଓ ଶୁଣାଇବା

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

 

# ଶିଖଣ୍ଡି



ସୁଧାଂଶୁ ଶେଖର ଦ୍ୱିବେଦୀ

ତା' କାହାଣୀ ଏକ ଏଭଳି ପ୍ରତିଶୋଧର କାହାଣୀ ଯାହାକୁ ପୂରା କରବାପାଇଁ ପୁଣିଥରେ ଜନ୍ମ ନେବାକୁ ପଡିଥିଲା । ବାସ୍ତବିକ କେତେ କଠିନ ଥିଲା ପ୍ରେମ ପାଇଁ ଅତିଶୋଧ ନେବା ଏବଂ ନିଜ ଜୀବନକୁ ବିନାଶ କରି କ୍ରୋଧକୁ ସହି ସହି ଅପେକ୍ଷା କରିବାକୁ ହେବ ! ସେ କେବଳ ପ୍ରେମ କରିବାକୁ ଚାହିଁଥିଲା ନିଜ ପ୍ରେମିକଠାରୁ । ଯାହା ସହିତ ନିଜ ଜୀବନ ବିତାଇବାକୁ ଅସୁମାରୀ ସ୍ୱପ୍ନ ଦେଖିଥିଲା । ନିଜ ପ୍ରେମିକ ସହିତ ବିବାହ କରିବାର ସ୍ୱପ୍ନ କଣ ଏତେବଡ଼ ସ୍ୱପ୍ନ ଥିଲା ଯେଉଁଥିପାଇଁ ସେ ନିଜକୁ ତିଳ ତିଳ ଶେଷ କରି ଦେଇଥିଲା !

ଦ୍ୱାପର ଯୁଗ ଅନ୍ତିମ ଚରଣରେ ଥାଏ । କଳିଯୁଗ ଆରମ୍ଭ ହେବାକୁ କିଛି ବର୍ଷ ବାକି ଥାଏ । କାଶୀରାଜାଙ୍କ ପୁତ୍ରୀ ଅମ୍ବା ଶାଲ୍ୱ ରାଜାଙ୍କୁ ନିଜ ହୃଦୟରେ ସ୍ଥାନ ଦେଇ ସାରିଥାନ୍ତି । କାଶୀରାଜା ମଧ୍ୟ ଦୁହିଙ୍କ ଇଚ୍ଛାପୂର୍ତ୍ତି ନିମନ୍ତେ ସମ୍ମତି ପ୍ରଦାନ କରି ସାରିଥାନ୍ତି । ଅମ୍ବା ସ୍ୱପ୍ନ ବିଭୋରିତ ହେଉଥାନ୍ତି ସ୍ୱୟମ୍ବର ଦିନ ନିଜ ପ୍ରେମିକ ଗଳାରେ ବରଣ ମାଳ ପିନ୍ଧାଇବେ । ମିଳନର କଳ୍ପନାରେ ସେ ପ୍ରଫୁଲ୍ଲିତ, ଉତ୍ସାହିତ ହେଉଥାନ୍ତି । କିନ୍ତୁ ଦୁହିଙ୍କ ମିଳନ କଣ ବାସ୍ତବିକ ସମ୍ଭବ ଥିଲା ନା ଅମ୍ବାଙ୍କର ଜନ୍ମ ଅନ୍ୟକିଛି ଉଦ୍ଦେଶ୍ୟ ନିମନ୍ତେ ହୋଇଥିଲା ?

 

ସ୍ୱୟମ୍ବର ଦିନ ଆକସ୍ମିକ ପ୍ରବଳ ଝଡ଼ ବହି ଆସିଲା ଏବଂ ସେଇ ଝଡ଼ରେ ତିନି ଜଣ ରାଜକୁମାରୀଙ୍କୁ ଉଡେଇନେଲା । ସେ ଝଡ଼ ଥିଲା ଗଙ୍ଗାପୁତ୍ର ଭୀଷ୍ମଙ୍କ ଶୌର୍ଯ୍ୟର ପରାକାଷ୍ଠା । ଗଙ୍ଗାପୁତ୍ର ଭୀଷ୍ମ ନିଜର ସାନ ଭାଇ ବିଚିତ୍ରବୀର୍ଯ୍ୟ ନମନ୍ତେ ବଧୂ ଖୋଜିବା ଲାଗି ଆସିଥାନ୍ତି ।

ଭାରତର ଅଧିକାଂଶ କ୍ଷେତ୍ରରେ ରାଜା ମହାରାଜା ମାନଙ୍କୁ ପରାସ୍ତ କରି ଅମ୍ବା, ଅମ୍ବିକା, ଅମ୍ବାଳିକାଙ୍କୁ ଜୋର ଜବରଦସ୍ତ ଉଠେଇ ନେଇଗଲେ । ନା ରାଜକୁମାରୀ ତିନିହେଁଙ୍କୁ କିଛି ପଚାରିଲେ ନା ସେମାନଙ୍କ ପିତା କାଶୀରାଜାଙ୍କୁ ! ଭୀଷ୍ମ କଣପାଇଁ ଏତେ କ୍ରୋଧିତ ଥିଲେ ତାହା କିଛି ବି କାରଣ ହୋଇପାରେ ! ପରନ୍ତୁ ଏଭଳି କୃତ୍ୟ ପାଇଁ ଗଙ୍ଗାପୁତ୍ର ଭୀଷ୍ମଙ୍କ ଜୀବନ ପାପର ପିଙ୍କିଳ ଭିତରେ ପଶିଗଲା । ଯାହା ତାଙ୍କ ସପକ୍ଷରେ କେବେବି ହେବାର ନଥିଲା । ତାଙ୍କ ମନ ମଧ୍ୟରେ ବି ବିଚାର ଆସିଥିବ କିଛି ନ ପଚାରି ଅନୁମତି ନ ନେଇ କେମିତି ତିନି ଜଣ ନାରୀଙ୍କୁ ଜୋରକରି ନେଇଯିବି ? ଶାଲ୍ୱ ରାଜା ନିଜ କ୍ଷମତା ଅନୁସାରେ ଭୀଷ୍ମଙ୍କୁ ଅତିରୋଧ କରିବାଲାଗି ଆକ୍ଲାନ୍ତ ପ୍ରୟାସ କଲେ । ଯଦ୍ୟପି ସେ ଭୀଷ୍ମଙ୍କୁ ଶତସହସ୍ର ଶୀଘ୍ରଗାମୀ ଶର ଦ୍ୱାରା ଢାଙ୍କି ପକାଇଥିଲେ ଯାହା ତାଙ୍କ ନିମନ୍ତେ କ୍ଷଣମାତ୍ର କାର୍ଯ୍ୟ ଥିଲା । ମାତ୍ର ପ୍ରତିବଦଳରେ ଯଥାଶୀଘ୍ର ଭୀଷ୍ମ ତାଙ୍କୁ ବନ୍ଧନ ଶସ୍ତ୍ର ଦ୍ୱାରା ବାନ୍ଧି ପକାଇଲେ ।

ହସ୍ତିନାପୁରକୁ ତିନିଜଣ ନାରୀଙ୍କୁ ଆଣିବା ପରେ ଧର୍ମାନୁଯାୟୀ ବିବାହ ଚର୍ଚ୍ଚା ହେଲା । ଅମ୍ବା ପ୍ରତିବାଦ କଲେ ସେ ବହୁ ପୂର୍ବରୁ ଶାଲ୍ୱ ରାଜାଙ୍କୁ ନିଜ ହୃଦୟ ଦେଇସାରିଛନ୍ତି ଏବଂ ଶାଲ୍ୱ ମଧ୍ୟ ତାଙ୍କୁ ନିଜର ଭାର୍ଯ୍ୟା ରୂପେ ମାନି ନେଇଛନ୍ତି । ଅମ୍ବା ନିଜ ହୃଦୟ ଭିତରେ ଥିବା ସବୁ କଥାକୁ ସମସ୍ତଙ୍କ ସମ୍ମୁଖରେ କହିବାକୁ ସାହସ କରିପାରିଲେ । ସେ ନିଜ ପ୍ରେମକୁ ଏମିତି ନିର୍ଜନ ବନ ମଧ୍ୟରେ ଛାଡି ଦେଇଥା'ନ୍ତେ କିପରି ? କିନ୍ତୁ ନିୟତି ତାଙ୍କ ଭାଗ୍ୟରେ ଗୋଟେ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ଲେଖିଦେଇଥିଲା । ଯେତେବେଳେ ସେ ଶାଲ୍ୱ ରାଜାଙ୍କ

 

ନିକଟରେ ପହଞ୍ଚିଲେ ରାଜା ନିଜ ପ୍ରେମକୁ ବିସ୍ମୃତ କରି କହିଲେ- 'ଦାନରେ ହେଉ କି କେହି ଜିତି ନେଇଥିବା ବସ୍ତୁକୁ ମୁଁ ସ୍ୱୀକାର କରିବାକୁ ଅକ୍ଷମ ।' ନିରାଶିତ ମନ ନେଇ ଅମ୍ବା ପୁଣି ହସ୍ତିନାପୁରକୁ ଲେଉଟି ଆସିଲେ । ବିଚିତ୍ରବୀର୍ଯ୍ୟ ମଧ୍ୟ ଜଣାଇଲେ - 'ଯେଉଁ କନ୍ୟା ନିଜ ମନ ମଧ୍ୟରେ ଅନ୍ୟ ପୁରୁଷକୁ ପ୍ରେମ କରେ ତାକୁ ମୁଁ ବିବାହ କରିପାରିବି ନାହିଁ ।'

ଏତେ ସବୁ ତତ୍ପରତା ପରେ ଅମ୍ବା ଆଉ କଣ କରି ପାରିଥା'ନ୍ତେ ? ତାଙ୍କୁ ଯିଏ ସ୍ୱୟମ୍ବର ସଭାରୁ ଉଠେଇ ଆଣିଥିଲେ ସେ ତ ଆଜୀବନ ବିବାହ କରିବେ ନାହିଁ ବୋଲି ପ୍ରତିଜ୍ଞାବଦ୍ଧ । ବିଚିତ୍ରବୀର୍ଯ୍ୟ ଅସ୍ୱୀକାର କଲେ । ଶାଲ୍ୱ ରାଜା ପ୍ରେମ ଅପେକ୍ଷା ନିଜ ମାନ ସମ୍ମାନକୁ ଅଧିକ ମହତ୍ତ୍ୱପୂର୍ଣ୍ଣ ଦେଲେ । ସମସ୍ତେ ନିଜ ନିଜ ସ୍ଥାନରେ ଅଟଳ ରହିଲେ । ଉପାୟଶୂନ୍ୟ ଅମ୍ବାଙ୍କ ଦୁର୍ଭାଗ୍ୟର ଦ୍ୱାର ଖୋଲିଗଲା । ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ,ପର୍ଶୁରାମଙ୍କ ଭଳି ନ୍ୟାୟବାନଙ୍କ ଠାରୁ ମଧ୍ୟ ନ୍ୟାୟ ମିଳିଲା ନାହିଁ । ଶେଷରେ ନିଜ ଜୀବନ ଯାତ୍ରାକୁ ସମାପ୍ତ କରି ଅନ୍ୟ ଏକ ନୂଆ ଯାତ୍ରା ଆରମ୍ଭ କରିବାକୁ ପ୍ରସ୍ତୁତ ହେଲେ ସେ । ନିଜ ଜୀବନ କେବଳ ପ୍ରତିଶୋଧ ନେବାପାଇଁ ଶେଷ କରିଦେଲେ ସତ ପରେ ଭୀଷ୍ମଙ୍କ ମୃତ୍ୟୁର କାରଣ ହୋଇ ଶୀଖଣ୍ଡି ରୂପେ ଦ୍ରୁପଦ ରାଜାଙ୍କ ସନ୍ତାନ କିନ୍ନର ରୂପେ ଜନ୍ମ ନେଲେ ।

ବିସି-୭୪,ସଲଟ ଲେକ,କଲକତା-୭୪

ମୋ-୯୭୮୧୩୭୩୫୧୨

 

# ବାପାଙ୍କ ଛାଇ



ସୁନନ୍ଦା ମହାନ୍ତି

କିଛି ଦିନ ପୁର୍ବରୁ ବାପା ଯେବେ ବଡଭାଇଙ୍କୁ ଡ଼କାଇ ତାଙ୍କ ନୂଆ ମଖମଲ୍ଲୀ ଯୋଡ ଓ ଲାଲ ରଙ୍ଗର କଲିକତିଆ ଟୋପିଟା ଦେଇ କହିଲେ ନେ ଏ ସବୁଥିରେ ତୋର ଅଧିକାର, ଆକୁ ସବୁ ପିନ୍ଧି ତୁ ମୋ ଛାଇ ପରି ଦିଶି ଯେବେ ଚାଲିଯିବୁ, ତୋ ବୋଉ ବି ଭାବିବ ମୁଁ ଯାଉଛି, କହି, ରାଜକୀୟ ଠାଣିରେ ହସିଉଠିଲେ, ଯେମିତି ସବୁବେଳେ ହସନ୍ତି ମତୁଆଲି ହସ । ରାଜୀବ ଏସବୁ ପିନ୍ଧିବନି, ତୁ ପିନ୍ଧିଲେ, ସତ ନହେଉ ପଛେ, ଠିକ ମୋ ପରି ଦେଖାଯାଉଥିବୁ ଯେ ସମସ୍ତେ କହିବେ ଜମିଦାର ରାଏ ସାମନ୍ତ ଯାଉଛନ୍ତି, ବେଳେ ବେଳେ ମୋ ଛାଇ ଭାବି ଆଡେଇ ଯିବେ କହି ପୁଣି ହସିଉଠିଲେ ।

ବାହାରୁ ସବୁ ଶୁଣି ରାଜୀବ ମନ କୋଉଠି ନା କୋଉଠି ଟିକେ ଖଟକ୍କାର ଝଟକ୍କା ଖାଇଥିଲେ ବି ସେ ବୁଝାଇ ନେଇଥିଲା ନିଜ ମନକୁ, ସତରେ କଣ ଏସବୁ ସେ ପିନ୍ଧିବ ! ବରଂ ଭାଇଙ୍କର ଉତ୍ତରାଧିକାରୀ ସୂତ୍ରରେ ଏ ସବୁଥିରେ ପୁରା ପୁରି ହକ ଅଛି । ତା ଛଡା ବୋଉ ତ କୁହେ ମୋ ସାନପୁଅ ରାଜୀବ ପୁରା ତା ବାପା ଭଳି ଦେଖିବାକୁ । ଅବିକଳ ନକଲ ତ, ଯୋଉଟା ରାଜୀବ ଭାଷାରେ ଟ୍ରୁ କପି । ତ ଦୁଇଭାଇ ଆମେ ଜଣେ ପୋଷାକରେ ଓ ଜଣେ ନକଲରେ ତ ବପାଙ୍କ ଛାଇ, ଭାବି ଖୁସି

 

ହୋଇଗଲା ।

ରାଜୀବର ଖୁସିରେ ନଜର ଲାଗିଗଲା । ବାପା ଚାଲିଗଲେ ସେହି ବର୍ଷ । ତା ନୂଆ ଚାକିରିରୁ ଛୁଟି ନେଇ ବାପାଙ୍କ ଦିତୀୟ ଶ୍ରାଦ୍ଧ ବାର୍ଷିକୀରେ ଯୋଗ ଦେବାପାଇଁ ସେଦିନ ମୁହଁ ସଞ୍ଜ ପାନଦୋକାନ ପାଖ ଦେଇ ଗଲାବେଳେ ବାପାଙ୍କୁ ସେଠି ବସିଥିବା ଦେଖି ଚମକି ପଡ଼ିଲା ରାଜୀବ । ପରେ ଜାଣିଲା, ସେ ବଡ ଭାଇ, ବାପାଙ୍କ କଥା ରଖି, ସେଇ ମଠା ଧୋତି ଓ ନାଲି ଟୋପି ପିନ୍ଧି ଅବିକଳ ବାପାଙ୍କ ଭଳି ଦିଶୁଥିଲେ । ରାଜୀବ ଚାକିରୀ କରିବା ଶୁଣିଥିଲେ କେତେ ଖୁସି ହୋଇଥାନ୍ତେ ବାପା କହି ଦୁଇଭାଇ କାନ୍ଦି ପକେଇଲା ବେଳେ ଭାଉଜ ପରସ୍ପରକୁ ଅଲଗା କରି, ବଡ଼ଭାଇ ପା ତୁମ ବାପା, କାନ୍ଦୁଛ କାହିଁକି କହିବାରେ ବୋଉ କାନ୍ଦି କାନ୍ଦି କହିଥିଲା, ହଁ ମିଛ ଛାଇ ଦୁହିଁଙ୍କୁ ଛାଡି କୁଆଡେ ଗଲ, ଭାଉଜ ପ୍ରବୋଧନା ଦେଉଥିଲେ ବୋଉକୁ ଆଉ ରାଜୀବ ଭାଇଙ୍କ ଗୋଡ ତଳେ, ମୁଣ୍ଡିଆ ମାରିବାକୁ ଯାଇ ହାତ ମାରି, ଅନୁଭବ କରୁଥିଲା ବାପାଙ୍କୁ । ଭାଇ କହୁଥିଲେ ଚାଲ ଚାଲ ସମୟ ହେଲାଣି ଟ୍ରେନ ଆସିଯିବ ।

ସାକ୍ଷୀଗୋପାଳ, ପୁରୀ, ୯୦୪୦୯୭୭୩୨୭

 

# ବିଚ୍ଛିନ୍ନ ସଂଯୋଗ



ପ୍ରଗନ୍ କୁମାର ପାତ୍ର

ବହୁତ ଚିନ୍ତାମଗ୍ନ ହୋଇ ସେ ଟ୍ରେନ୍ ଭିତରକୁ ଚଢ଼ିଗଲା । ଟ୍ରେନର ଗେଟ୍ ବନ୍ଦ ହେଲା ଆଉ ଗାଡ଼ି ଆଗକୁ ବଢ଼ିବାକୁ ଲାଗିଲା । କିଛି ସମୟ ଗଲାପରେ ସେ ଯେତେବେଳେ ନିଜ ପକେଟରେ ହାତ ମାରିଲା, ସେତେବେଳେ ସେ ଜାଣିଲା ତା ମୋବାଇଲ ଫୋନଟା ନାହିଁ । ମନେ ପକାଇଲା ବୋଧେ ବ୍ୟସ୍ତତା ଭିତରେ ଫୋନ୍ ଟାକୁ ଘରେ ଭୁଲି ଯାଇଛି । ସେ ବହୁତ ବ୍ୟସ୍ତ ବିବ୍ରତ ଦିଶିଲା, ମନେ ମନେ ଭାବିଲା ବିନା ଫୋନ୍ ରେ କେମିତି ସାରା ଦିନ କଟେଇବ । ଏମିତି ଭାବନାରେ ବୁଡ଼ୁ ବୁଡ଼ୁ ସେ ନିଜ ଚାରି ପଟକୁ ଅନେଇଲା, ସେ ଦେଖିଲା - ମା' ଟି ତା'ର କୁନି ଝିଅ ସାଥେ ଖେଳିବାରେ ବ୍ୟସ୍ତ, ପ୍ରୌଢ଼ ଦମ୍ପତି ଦୁହେଁ ହାତ ଧରାଧରି ହୋଇ ବସିଛନ୍ତି, ଆଉ ଜଣେ ଲୋକ ବହି ପଢ଼ାରେ ବ୍ୟସ୍ତ । ଏସବୁ ଦେଖି ସେ ଖୁବ୍ ଖୁସି ହେଲା ଆଉ ହୃଦୟଙ୍ଗମ କଲା ୟାଠୁ ଭଲ ସଂଯୋଗ ଆଉ କ'ଣ ହୋଇପାରେ ।

ବୌଦ୍ଧ, ୭୬୨୦୧୫

ଇମେଲ୍ : praganpatra55@Yahoo.com

 

# ଶେଷ ପ୍ରଶ୍ନ



ସରୋଜିନୀ ମିଶ୍ର

ଜୁଲାଇ ଏକ ତାରିଖ । ସମୟ ସନ୍ଧ୍ୟା । ରାମୁ ହାଟରୁ ପରିବା ନେଇ ଘରକୁ ଫେରୁଥାଏ । ହଠାତ ରମାଦେବୀଙ୍କ ଉପରେ ନଜର ପଡିଲା । ଆରେ, ଏ କ'ଣ ? ମାଆ କଣ ପାହାଚଟା ଉପରେ ଏମିତି ଶୋଇଛନ୍ତି ? ଏଗାରଟା ବେଳକୁ ତ ମୋ ଅଟୋରୁ ଏଇ ଗେଟ ପାଖରେ ଓହ୍ଲେଇ ଥିଲେ । କଣ ଆଉ ହେଲା ? ଦେହ ଭଲ ନାହିଁ ନା କଣ ?

ଗେଟ ଖୋଲି ଭିତରକୁ ପଶିଲା ରାମୁ । ରମା ଦେବୀଙ୍କ ପାଖକୁ ଯାଇ ଡାକିଲା ମାଆ, ମାଆ । କୌଣସି ଉତ୍ତର ପାଇଲା ନାହିଁ । ଦେହକୁ ଟିକେ ହଲାଇଦେଲା । ନା, ତଥାପି କୌଣସି ଉତ୍ତର ନାହିଁ । ଏ କ'ଣ ? ମାଆ ବୋଧେ ବେହୋସ ହୋଇ ଯାଇଛନ୍ତି । ପରିବା ବ୍ୟାଗଟି ସେଠି ଥୋଇଦେଇ ଦୌଡ଼ିଗଲା ପିଣ୍ଟୁ ଘରକୁ । ପିଣ୍ଟୁବାବୁ, ପିଣ୍ଟୁବାବୁ, ପାଣି ଢାଳଟେ ଦେଲ । ମାଆ ବେହୋସ ହୋଇ ଯାଇଛନ୍ତି । ତମ ମାଆଙ୍କୁ ମଧ୍ୟ ଟିକେ ଡାକିଦେବ ତ । ଧଇଁସଇଁ ହୋଇ ବାହାରେ ଖେଳୁଥିବା ପିଣ୍ଟୁକୁ କହିଲା ରାମୁ ।

ଦଶ ବର୍ଷର ପୁଅ ପିଣ୍ଟୁ । ରାମୁ ଅଟୋରେ ସବୁଦିନ ସ୍କୁଲକୁ ଯାଏ । ରାମୁର କଥା ଶୁଣି ଘରଭିତରକୁ ଦୌଡ଼ିଗଲା । ମାଆଙ୍କୁ ଯାଇ କହିଲା- ମମି, ମମି, ଅଟୋ ଅଙ୍କଲ ପାଣି ଢାଳଟେ ମାଗୁଛନ୍ତି, ଆଉ ତମକୁ ବି

 

ଡାକୁଛନ୍ତି । କାହିଁକି ! କଣ ହେଲାକି ? ପଚାରି ପଚାରି ପାଣି ଢାଳଟେ ଧରି ବାହାରକୁ ଆସିଲେ ରଶ୍ମିଦେବୀ । ରାମୁକୁ ଦେଖି ପଚାରିଲେ - କଣ ହେଲା ରାମୁ ? ଏତେ ବ୍ୟସ୍ତ କା'ଣ ? ମାଆ, ମୋ ସାଙ୍ଗରେ ଟିକେ ଆସ । ସେ ଘରର ମାଆ ବେହୋସ ହେଇଯାଇଛନ୍ତି । ଘରେ କିଏ ନାହାନ୍ତି । ତାଲା ପଡିଛି ।

ରାମୁ ଓ ରଶ୍ମିଦେବୀ ପାଣି ଢାଳଟେ ଧରି ଯାଇ ରମାଦେବୀଙ୍କ ପାଖରେ ପହଞ୍ଚିଲେ । ମୁହଁରେ ପାଣି ମାରିଲେ । ନା, କିଛି ଲାଭ ହେଲାନି । ଏମିତି ପରିସ୍ଥିତିରେ କା'ଣ କରିବେ କିଛି ବୁଝି ପାରିଲେନି ।

ବାରମ୍ବାର ପାଣି ଛିଞ୍ଚିବା ପରେ ମଧ୍ୟ ଚେତା ନ ଫେରିବାରୁ ଉଭୟେ ଠିକ କଲେ ତାଙ୍କୁ ନେଇ ଡାକ୍ତରଖାନା ଯିବେ । ରାମୁ ଘରକୁ ଫୋନ କରି ସାନଭାଇ ସୋମୁକୁ ଅଟୋ ନେଇ ଆସିବା ପାଇଁ କହିଲା । କିଛି ସମୟ ପରେ ସୋମୁ ଅଟୋ ନେଇ ପହଞ୍ଚିଗଲା । ରାମୁ, ସୋମୁ ଏବଂ ରଶ୍ମିଦେବୀ ମିଶି ରମାଦେବୀଙ୍କୁ ଟେକାଟେକି କରି ଅଟୋରେ ବସାଇଦେଲେ । ପ୍ରାୟ ତିରିଶ ମିନଟ ପରେ ଅଟୋ ଯାଇ ଡାକ୍ତରଖାନାରେ ପହଞ୍ଚିଗଲା । ଏ ଭିତରେ ରଶ୍ମିଦେବୀ ରମାଦେବୀଙ୍କ ବୋହୂକୁ ଖବର ଦେଇ ଦେଇଥାନ୍ତି ।

ତା ପରଦିନ ସକାଳ ପ୍ରାୟ ନଅଟା ବେଳକୁ ରମାଦେବୀଙ୍କ ଦୁଇ ପୁଅ, ଦୁଇ ବୋହୁ, ନାତି, ନାତୁଣୀ ସମସ୍ତେ ଆସି ଡାକ୍ତରଖାନାରେ ପହଞ୍ଚିଲେ । ସେତେବେଳ ପର୍ଯ୍ୟନ୍ତ ରମାଦେବୀଙ୍କ ଚେତା ଫେରି ନଥାଏ । ପ୍ରାୟ ଏଗାରଟା ବେଳକୁ ଚେତା ଫେରିଲା । ରମାଦେବୀ ଧୀରେ ଧୀରେ ଆଖି ଖୋଲି ଦେଖିଲେ ଦୁଇ ବୋହୁ ଗୋଡ଼ତଳେ ବସି ଯୁକ୍ତିତର୍କ କରୁଛନ୍ତି । ସେ କିଛି ବୁଝି ପାରିଲେନି । ପୁଣି ଆଖି ବନ୍ଦ କରି ଦେଇ ଚୁପଚାପ ଶୁଣିବାକୁ ଲାଗିଲେ । ବଡ ବୋହୁ ସାନ ବୋହୂକୁ କହୁଥାଏ - ମାଆ ଅଧଦିନ ଆମ ଘରେ ଅଧା ଦିନ

 

ତମ ଘରେ ରହିବେ ବୋଲି ଠିକ ହେଇଥିଲା । ତେଣୁ ଜୁଲାଇ ଏକରେ ମାଆଙ୍କୁ ଅଟୋରେ ବସାଇ ତମ ଘରର ଠିକଣା ଦେଇ ପଠାଇ ଦେଲି । ତୁ କେମିତି ଚାବି ପକେଇ ଦେଇ ଭୋଜି ଖାଇବାକୁ ପଳେଇଲୁ ? ସାନ ବୋହୁ କହିଲା - ମୁଁ କେମିତି ଜାଣିବି ତମେ କାଲି ପଠେଇ ଦେବ ବୋଲି ? ଏ ବର୍ଷ ଫେବୃଆରୀ ମାସଟା ଅଣତିରିଷି ଦିନ । ସେ ହିସାବରେ ବର୍ଷଟା ତିନିଶହ ଛଷଠି ଦିନ । ଅଧା ଅଧା ହେଲେ ଜଣକୁ ଶହେ ତେୟାଅଶି ଦିନ ପଡୁଛି । ସେ ହିସାବରେ ଜୁଲାଇ ଦୁଇ ତାରିଖଠୁ ମୋର ପାଳି ଆରମ୍ଭ ହେବା କଥା । ସେଥିପାଇଁ ମୁଁ ଭୋଜି ଖାଇବାକୁ ପଳେଇଲି ।

ତୁ ଏମିତି ହିସାବ କରିବୁ ବୋଲି ମୁଁ କ'ଣ ଜାଣିଥିଲି ? ମୁଁ ଭାବିଲି ଜାନୁଆରୀରୁ ଜୁନ ଯାଏଁ ମୋର ଜୁଲାଇ ଠାରୁ ଡିସେମ୍ବର ଯାଏଁ ତୋର । ସେଥିପାଇଁ ମୁଁ ଜୁଲାଇ ଏକରେ ତମ ଘରକୁ ପଠେଇ ଦେଲି । ତତେ ଫୋନ ଲଗେଇଥିଲି, ତୁ ଉଠେଇଲୁନି । ମୋର ଟିକେ କଟକ ଯିବାର ଥିଲା, ପଳେଇଲି । ସାନ ବୋହୁ ଚୁପ ରହିଲା । ମନେମନେ ଭାବିଲା - ମୁଁ କାହିଁକି ଗୋଟେ ଦିନ ଅଧିକ ରଖିବି ? ସେଥିପାଇଁ ଜାଣିକରି ଫୋନ ଉଠେଇଲିନି ।

ଠିକ ସେତିକିବେଳେ ଦୁଇ ଭାଇ ଭିତରକୁ ଆସିଲେ । ବଡ ଭାଇ ହାତରେ କାଗଜଟିଏ ଧରିଥାଏ । ସାନଭାଇକୁ କହିଲା - ମୁଁ ଭାବୁଛି ଗାଁ ଘରଟା ବିକିଦେବା । ଚାଳଘର ତ, ତିନି ଲକ୍ଷ ହେଲେବି ଦେଇଦେବା । ଲକ୍ଷେ ବୋଉ ନାଁରେ ବାନ୍ଧିଦେବା । ଆଉ ଦି ଲକ୍ଷ ତୋର ଲକ୍ଷେ ମୋର ଲକ୍ଷେ । ବୋଉର ଟଙ୍କାଟା ବ୍ୟାଙ୍କରେ ବାନ୍ଧିଦେଲେ ଯାହା କଳନ୍ତର ଆସିବ ସିଏ ଯା ପାଖରେ ରହିବ ସିଏ ନେବ । ତା ନାଁରେ ଯେଉଁ ଟଙ୍କାଟା ଥିବ ସେଇଟା ସୁଧ ଘରେ ଲଗେଇ ଦେବା । ନହେଲେ କେମିତି କରିବା ଯେ ? ତା ଦେହ ଖରାପର ଟଙ୍କା କିଏ ଦେବ ? ତୁ କ'ଣ କହୁଚୁ ? ତୋର ମତ କ'ଣ ? ସାନ ଭାଇ ଖୁବ ଖୁସିରେ କହିଲା - ହଁ ଭାଇନା,

 

ବଢ଼ିଆ ହେବ । ବଡଭାଇ ହାତରେ ଧରିଥିବା କାଗଜଟିକୁ ସାନଭାଇ ହାତକୁ ବଢ଼େଇ ଦେଇ କହିଲା -ଏଥିରେ ମୁଁ ସନ୍ତକ କରିଦେଇଛି, ତୁ କରିଦେ,ବୋଉର ଚେତା ଆସିଲେ କରିଦେବା ।

ରମାଦେବୀ ସବୁ ଶୁଣୁଥାନ୍ତି । ମନେ ମନେ ଭାବିଲେ, ଏବେ ମୁଁ ବଞ୍ଚିଥିବା ବେଳେ ତ ଭଲଭାବେ ଖାଇବାକୁ ଗଣ୍ଡେ ପାଉନି । ସମସ୍ତେ ବାଦବୁଦିଆ ହେଉଛନ୍ତି । ହାତ ଖର୍ଚ୍ଚକୁ ଶହେ ଟଙ୍କା ବି ଦେଉ ନାହାନ୍ତି । ଶାଢ଼ୀ ଖଣ୍ଡେ କିଣି ଦେଉନାହାନ୍ତି ଯେ ପୁରୁଣା ଶାଢୀରେ କାମ ଚଳଉଚି । ବଞ୍ଚି ଥିଲାବେଳେ ଭାତଗଣ୍ଡେ ଭଲଭାବେ ଦେବେନି, ଶାଢ଼ୀ ଖଣ୍ଡେ କିଣିଦେବେନି ମଲାପରେ ଲକ୍ଷେ ଟଙ୍କା ଖର୍ଚ୍ଚ କଲେ ମୁଁ ପାଇଲି କଣ ? ତା ଛଡା ଯଦି ଗାଁ ଘର ବିକ୍ରି କରି ଦିଅନ୍ତି, ମୁଁ ଏମାନଙ୍କର ପାଖରେ କ'ଣ ସବୁବେଳେ ରହିପାରିବି ? ମତେ ତ ଏଠି ରହିବାକୁ ଜମା ଭଲଲାଗୁନି । ଖାଲି ପୁଅଘର ବୋଲି ରହିବା  କଥା ।  କା ପାଖରେ ହେଲେ ସମୟ ଟିକେ ନାଇଁ ମୋ ସାଙ୍ଗରେ କଥା ପଦେ ହେବାକୁ । ଏକା ଏକା ଏମିତି କେମିତି ରହିବି ? ଯଦି ଏମାନଙ୍କ ପାଖରେ ନରହି ଗାଁକୁ ଚାଲିଯାଏ ତାହେଲେ ସେଠି ରହିବି କେମିତି ? ଖାଇବି କ'ଣ ? ଦେହ, ପା ଭଲମନ୍ଦ ବି ଅଛି । ଏଠି ରହିଲେ ଅପମାନ ପାଇ ଜିଇଁ ଥାଉଥାଉ ମରିବି । ସେଠିକି ଗଲେ ଭୋକ ଉପାସରେ ମରିବି । କାହାକୁ କହିବି ? ପୁଅମାନେ ତ ଅବୁଝା । ଅଜାଗା ଘା ଦେଖି ହୁଏନି କି ଦେଖେଇ ହୁଏନି । ହେ ଭଗବାନ ! କଣ କରିବି, କିଛି ବୁଦ୍ଧି ଦିଶୁନି । ମତେ ବୁଦ୍ଧିଦିଅ ପ୍ରଭୁ ।  ଆଉ ସହି ହେଉନି ।

କିଛି ସମୟ ପରେ ଧୀରେ ଧୀରେ ଆଖି ଖୋଲିଲେ ରମାଦେବୀ । ରମା ଦେବୀଙ୍କୁ ଆଖି ଖୋଲିବାର ଦେଖି ବୋଉର ଚେତା ଆସିଲା, ବୋଉର ଚେତା ଆସିଲା କହି ଦୁଇ ପୁଅ ପାଖକୁ ଦୌଡ଼ି ଆସିଲେ । ବଡପୁଅ ହାତରେ ଧରିଥିବା କାଗଜଟି ରମାଦେବୀଙ୍କ ଆଡକୁ ବଢ଼େଇ ଦେଇ କହିଲା - ବୋଉ, ଏଇଟାରେ ଟିକେ ସନ୍ତକ ଗୋଟେ କରିଦେଲୁ । ଆମ

 

ଭାବୁଛୁ ଗାଁ ଘରଟା ବିକ୍ରି କରିଦେବା ଯେ ତୋର ଔଷଧ ପତ୍ର ଏବଂ ରହିବା ଖର୍ଚ୍ଚ ପାଇଁ କିଛି ଅସୁବିଧା ହେବନି । ନେ, ଏଇ ଜାଗାରେ ସନ୍ତକଟିଏ କରିଦେ ।

ରମାଦେବୀ କିଛିସମୟ ଚୁପ ରହିବା ପରେ ଦୀର୍ଘ ଶ୍ୱାସଟିଏ ନେଇ ପଚାରିଲେ - ଏଇ ବର୍ଷଟା ସିନା ତିନିଶହ ଛଷଠି ଦିନ ବୋଲି ତମ ଘରେ ଅଧା ଦିନ ତାଙ୍କ ଘରେ ଅଧାଦିନ ରହିଯିବି, ଆଉ ବର୍ଷକୁ ତ ତିନିଶହ ପଞ୍ଚଷଠି ଦିନ ହେବ । ସମାନ ଭାଗ ହେବନି । ଗୋଟେ ଦିନ ବଳିଯିବ । ସେହି ଦିନଟା କୋଉଠି ରହିବି ? ଏହା ଥିଲା ତାଙ୍କର ଶେଷ ପ୍ରଶ୍ନ । ପ୍ରଶ୍ନଟି ପଚାରି ଦେଇ ସେ ଚିରନିଦ୍ରାରେ ଶୋଇ ଯାଇଥିଲେ ।

ଆଲୋକ ନଗର , ଆମ୍ବପୁଆ
ବ୍ରହ୍ମପୁର , ଗଞ୍ଜାମ , ଓଡ଼ିଶା
ଭ୍ରାମ୍ୟଭାଷ - ୯୯୩୮୪୬୫୨୦୭

 

# ଅଭିଶପ୍ତା



ବର୍ଷାରାଣୀ
ମହାମଲ୍ଲିକ

ଲୋକେ କୁହନ୍ତି ଅଭିଶାପ ଓ ଆଶୀର୍ବାଦ ବୋଲି କିଛି ଜିନିଷ ନ ଥାଏ, ଜଣଙ୍କ ପ୍ରତି ପାଞ୍ଚ ଲୋକଙ୍କ ସନ୍ତୁଷ୍ଟି ହିଁ ଆଶୀର୍ବାଦ ଆଉ ଜଣଙ୍କ ପ୍ରତି ପାଞ୍ଚ ଲୋକଙ୍କ ଅସନ୍ତୁଷ୍ଟି ହିଁ ଅଭିଶାପ । କିନ୍ତୁ ଏଇଆ ଭିନ୍ନ ଅର୍ଥ ଭିନ୍ନ ସ୍ଥିତିରେ ଠିକ୍ ସୁହାଇବ । ହରିପୁର ଗାଁର ଝିଅ ଚନ୍ଦ୍ରିକା, ରୂପରେ ଗୁଣରେ ଅଦ୍ୱିତୀୟ, ଲାବଣ୍ୟର ଧାରା ପ୍ରବାହିତ ତା'ର ସମ୍ପୂର୍ଣ୍ଣ ଅବୟବରେ, ନା କଳା ନା ବେଶୀ ଗୋରା, ହଁ ସେ ଗହମ ଗୋରୀ, ସ୍ୱର କୋକିଳୀ କଣ୍ଠୀ, ଯେ କୌଣସି ଲୋକର ଚିତ୍ତକୁ ଆକର୍ଷି ନେବାର କଳା ତା ଭିତରେ ନିହିତ । ସବୁଥିରେ ସେ ସିନା ସୁନ୍ଦର ହେଲେ ତା ଜୀବନ ଯେ ଅସୁନ୍ଦର, ଘନ କାଳିମାରେ ତାର ଜୀବନ ଗତିଶୀଳ । ଚନ୍ଦ୍ରିକା ଭଲପାଏ ସନ୍ତୋଷକୁ । ଆପଣେଇ ନିଏ ତାକୁ, ତାର ସୁଖ ଦୁଃଖ ସବୁ ସିଏ । ପ୍ରଚଣ୍ଡ ଖରାରେ ତାକୁ ଛାଇ ମିଳିଛି ତ ସନ୍ତୋଷ ପାଇଁ । ସନ୍ତୋଷ ବି ଚାହେଁ ଚନ୍ଦ୍ରିକାକୁ ସେତିକି । ସିଏ ପାଠ ପଢ଼େ କଟକରେ । କରୁଛି ରାଜନୀତିରେ ସ୍ନାତକୋତ୍ତର । ଆଉ ଏପଟେ ଚନ୍ଦ୍ରିକା ଗୋଟେ ବେସରକାରୀ ସ୍କୁଲରେ ପାଠ ପଢାଏ । ସନ୍ତୋଷ ଜାଣିଛି ସବୁ କଥା ତାର ଅତୀତ, ବର୍ତ୍ତମାନ୍ ସବୁ । ତାର ଚଲାପଥର ସହଯାତ୍ରୀ ଯେତେବେଳେ ଚାଲୁ ଚାଲୁ କଥାବାର୍ତ୍ତା ଦ୍ୱାରା ଦୁହେଁ ଦୁହିଁଙ୍କୁ ଢେର୍ ଚିହ୍ନି ଗଲେଣି । ସନ୍ତୋଷ କହେ ତୁମେ ଚିନ୍ତା

 

କରନା ମୁଁ ଅଛି ଯେବେ ମୋ ଚାକିରୀ ହେଇଯିବ ତୁମକୁ ଏ ସବୁଠିଁ ଦୁରେଇ ନେଇଯିବି, ପୁଣି ତୁମେ ହସିବ ନୂଆ ଜୀବନ୍ ଟେ ବଞ୍ଚିବା । ଚନ୍ଦ୍ରିକା ଟିକେ ହସିଦିଏ, କହେ ଆରେ ବୁଦ୍ଧୁ ତମେ ତ ତୁମର ପ୍ରଥମେ ପଢ଼ ମୋ କଥା କାଇଁ ଏତେ ଭାବୁଛ ଯେ ? ସନ୍ତୋଷ ଠୁଁ ଚନ୍ଦ୍ରିକା ମାତ୍ର ଗୋଟିଏ ବର୍ଷର ସାନ, ଦୁହିଁଙ୍କ ମାନସିକତା ବି ସମାନ । ଦୁହେଁ ଦୁହିଁଙ୍କ ଆଖିରେ ସ୍ୱପ୍ନ ଦେଖନ୍ତି ଯେଉଁଠି ନ ଥିବ, ଯାତନା, ଯନ୍ତ୍ରଣା, କୋହ, ଲୁହ, ଥିବ ଦୁହିଁଙ୍କ ପାଇଁ ଅଭିମନ୍ତ୍ରଣା । ଏକ ଅଜଣା  ନୀଳ ଆକାଶ ତଳେ ଥିବା ରଙ୍ଗିନ ଦୁନିଆର ସ୍ୱପ୍ନ ଦେଖୁଥିଲେ ସେମାନେ । ଏମିତି ସନ୍ତୋଷ ଛାତିରେ ମୁଣ୍ଡ ରଖି କେତେ କାହାଣୀ କହିଯାଏ ଚନ୍ଦ୍ରିକା... ହୁଁ ହୁଁ ମାରୁଥାଏ ସନ୍ତୋଷ । କହେ ତାଙ୍କ କଥା, କହେ ଏ ଦୁନିଆର କଥା, କହେ ଜୀବନର କଥା, କହେ ପ୍ରେମ ରାଇଜର କଥା.... କେବେ ପୁଣି ଲୁହ ଢାଳି ଢ଼ାଳି କୁହେ ନିଜର କଥା ନିଜର ଅଙ୍ଗେନିଭା ଜୀବନର କଥା । ତାର ଜୀବନ ବି କେତେ ଭଲ ଥିଲା, ଥିଲା ଶାନ୍ତି, ନଥିଲା ଏଭଳି ଅବଶାଦ । ବାପାମା'ଙ୍କ ଗୋଟିଏ ବୋଲି ଅଳିଅଲ ଝିଅ ସେ, ମା'ର କୋଳରେ ମୁହଁ ଗୁଞ୍ଜି ବାପାଙ୍କ ପିଠିକୁ ଘୋଡା ସଜେଇ ବସି ଦିନ ତମାମ ଏମିତି ହସ ଖୁସିରେ ସମୟ କାଟି ଦେଉଥିଲା । ହେଲେ ଜୀବନ ଯେତେବେଳେ ଅଛି ଏ ରଙ୍ଗ ମଞ୍ଚରେ କମେଡି ଟ୍ରାଜେଡ଼ିର ସମନ୍ୱୟରେ ହିଁ ସଂପୂର୍ଣ୍ଣ ନାଟକର ପରିସମାପ୍ତି ଘଟେ ଏଇଟା ନ ଥିଲେ ମଞ୍ଚ ଅଭିନୀତ ଘଟଣାର ସ୍ୱାଦ ଚାଖି ହୁଏନା । ଧୀରେ ଧୀରେ କେମିତି ଗୋଟେ ସୁଖର ସଂସାରଟା ଭାଙ୍ଗିବାକୁ ଆରମ୍ଭ କଲା ଯେପରି । ଚନ୍ଦ୍ରିକାର ବାପାଙ୍କ ମନ ବଦଳିବାକୁ ଲାଗିଲା, ସେ ଆଗପରି ଆଉ ମାଁଙ୍କ ସହ ବେଶୀ କଥାବାର୍ତ୍ତା ହେଲେ ନାହିଁ, ଚନ୍ଦ୍ରିକାକୁ ଆଉ ଆଗପରି ଗେଲ କଲେ ନାହିଁ, ଘରକୁ ଫେରିଲେ କେବଳ ଗମ୍ଭୀର ଦେଖାଯାଉଥିଲେ, କିଛି କହିଲେ ଧ୍ୟାନ ସହ ଶୁଣୁ ନଥିଲେ, ଅଫିସରୁ ଫେରିଲେ ଗୁମ୍ ମାରି ବସି ପଢୁଥିଲେ, ଝିଅ ପାଇଁ ପୂର୍ବଭଳି

 

ଚକୋଲେଟ୍ ଆଣିଲେ ନାହିଁ, ଝିଅ ଯେତେ ଜିଦ୍ଧି କଲେବି ପୂର୍ବ ଭଳି ତା ପାଇଁ ଘୋଡ଼ା ହେଲେ ନାହିଁ । ସବୁବେଳେ ଖାଲି ରାଗ ଗର ଗର ହେଲେ ଶୀଘ୍ର ଅଫିସ ଚାଲିଯାଇ ଡ଼େରି ରାତିରେ ଫେରୁଥିଲେ । ପ୍ରଥମେ ପ୍ରଥମେ ତ ମା କିଛି କହୁ ନ ଥିଲେ କିନ୍ତୁ ଖାଇବା ବେଳେ ଦିନେ ପଚାରିଲେ ଆଜିକାଲି ତମେ କଣ କରୁଛ ଯେ ଏଭଳି ଆଚରଣ କରୁଛ, ଦେଖ ମତେ ଏ ସବୁ କିଛି ଠିକ୍ ଲାଗୁନି, ବାପା ନିରୁତ୍ତର ରହିବାରୁ ସେ ପୁଣି ପ୍ରଶ୍ନ କଲେ ସେ ଏଭଳି ରାଗି ଉଠିଲେ ଯେ ଖାଇବା ଥାଳିକୁ ଜୋର୍ ରେ ହାତରେ ଠେଲି ତାକୁ ଫୋପାଡ଼ି ଦେଲେ, ଏଇ ସବୁ ଦେଖି ଚନ୍ଦ୍ରିକାବୋଉ ଚନ୍ଦ୍ରିକାକୁ ଜାବୁଡ଼ି ରୁମ୍ ଭିତରକୁ ଚାଲିଗଲେ, ଅଜାଡ଼ି ଦେଲେ ଝରିବି ଝରିବି ହେଉଥିବା କୋହ ଆଉ ଲୁହକୁ । ଏଥିରେ ଫରକ ପଡ଼ିନଥିଲା କିଛି ବାପାଙ୍କ, ଓଲଟି ଏ ଭଲିଆ ସ୍ଥିତିରେ ସେ କ୍ଷୀପ୍ର ଗତିରେ ଚାଲିଯାଇଥିଲେ ବାହାରକୁ । ସେତେଦିନୁ ମା କିଛି କହିବା ଛାଡ଼ି ଦେଇଥିଲେ । ନିଜ ମନର ମଣିଷ ଯେତେବେଳେ ବୁଝି ପାରେନା ଅନ୍ତରର କଥା, ଆଉ ବା କାହାକୁ କଣ ସେ କହିଥାନ୍ତେ । ଚନ୍ଦ୍ରିକାର ଦେହରେ ସଞ୍ଚରି ଯାଇଥିଲା କିଛି ଭୟ । ତା ବାପାଙ୍କ ଏଭଳି କେତେଦିନ ଧରି ଚାଲିଲା । ହଠାତ୍ ଦିନେ ବେଲ୍ ବାଜିଲା ମାଁ ଯାଇ କବାଟ ଖୋଲି ଦେଖିଲା ବେଳକୁ ସ୍ୱାମୀଙ୍କ ସହ ଅଛି ଜଣେ ମହିଳା, ଉଭୟଙ୍କ ବେକରେ ଦୁଇଟି ଫୁଲ ମାଳ, ଝିଅଟିର ସିନ୍ଥିରେ ସିନ୍ଦୂର ଦାଉ ଦାଉ ହୋଇ ଜଳୁଛି, ହାତର ଶଙ୍ଖା, ପାଦର ଅଳତା ଏ ସବୁ ଦେଖି ଚନ୍ଦ୍ରିକା ବୋଉଙ୍କର ଆଉ ବୁଝିବାର ବାକି ନଥିଲା ଯେ ସ୍ୱାମୀ ଦ୍ୱିତୀୟ ବିବାହ କରିଛନ୍ତି । ୟାକୁ ଦେଖି ସେ କଚାଡ଼ି ହୋଇ ପଡ଼ିବାକୁ ଥିଲେ, ଚନ୍ଦ୍ରିକା କୁ ଦେଖି କୌଣସି ମତେ ଆୟତ୍ତ କରି ନେଲେ ତଳେ ପଡିବା ଠୁଁ । ସ୍ୱପ୍ନରେ ସୁଦ୍ଧା ସେ ଭାବି ନ ଥିଲେ ତାଙ୍କ ପରିବାର, ସୁନାର ସଂସାର ତାଙ୍କ ଆଖିରେ ଧ୍ୱଂସ ହୋଇଯିବ । ଆଶା କରି ନ ଥିଲେ କେବେ ତାଙ୍କ ଠୁଁ ଏଭଳି ପ୍ରତାରଣା । ତଥାପି ଜଣାଇଲେ ସ୍ୱାଗତ, ପ୍ରତିବାଦ କି

 

ଅଭିମାନ ଅଭିଯୋଗ କରିବା ପାଇଁ ନ ଥିଲା ତାଙ୍କ ପାଖରେ ଆଉ ଶବ୍ଦ । ଝିଅଟି ଥିଲା ତାଙ୍କ ଅଫିସ୍ ର ମାଲିକିଆଣୀ ପରକୀୟା ପ୍ରୀତିରେ ଦୁହେଁ ବାନ୍ଧି ହୋଇ ଯାଇଥିଲେ ଶେଷକୁ ବାହା ହେବାର ନିଷ୍ପତ୍ତି ବି ନେଇଗଲେ । ଚନ୍ଦ୍ରିକାର ବାପା ଭୁଲିଗଲେ ଯେ ତାଙ୍କର ସ୍ତ୍ରୀ ଅଛନ୍ତି, ଅଛି ଗୋଟେ କୁନି ଝିଅ । ଆଖି ସାମନାରେ ମାଁ, ବାପାଙ୍କର ଏଭଳି ପରିବର୍ତ୍ତନ ଦେଖି ମନ ଭାଙ୍ଗିଦେଲେ । ଏକା ହୋଇଗଲେ ମା ଝିଅ ଦୁଇଜଣ, ଭାଙ୍ଗିଗଲା ଖୁସିର ସୁନାସଂସାର । ନୂଆ ପତ୍ନୀ ଜଣଙ୍କ ମଧ୍ୟ ଅଫିସ ଯିବା ହେତୁ ଚାକରାଣୀ ପରି ତାଙ୍କ ପଛେ ଖଟିଲେ ଚନ୍ଦ୍ରିକା ବୋଉ, ନାନା ପ୍ରକାର ମାନସିକ ଅତ୍ୟାଚାରରେ ମା ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲେ । ୧୦ ବର୍ଷର କୁନି ଝିଅ ଉପରେ ବି ନୂଆ ମା ଜଣକ ନାନା ଅତ୍ୟାଚାର କରୁଥିଲେ, ବାପା ଏ ସବୁ ଦେଖି ମଧ୍ୟ ନୀରବ ରହିଲେ ଓଲଟି ସାଥ ଦେଲେ ନୂଆ ମାଁଙ୍କୁ । ଭୁଲ୍ ତାଙ୍କର ଥିଲେ ବି ସେ ସପକ୍ଷ କରୁଥିଲେ ନୂଆ ମାଁଙ୍କୁ । ଏ ସବୁ ଦେଖି ସହିପାରିଲେନି ଚନ୍ଦ୍ରମା ବୋଉ । ଦୁଃଖ କଥା ଭାବି ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲେ । ମାଁଙ୍କୁ ବହୁତ ଜର ହେଲା ସେ ଆଉ ଖଟରୁ ଉଠିପାରିଲେ ନାହିଁ । ଦିନେ ସମସ୍ତଙ୍କୁ ଛାଡ଼ି ସେ ଚାଲିଗଲେ ଦୂର ଆକାଶର ତାରାଟିଏ ହେବା ପାଇଁ । ଛାଡ଼ି ଚାଲି ଗଲେନି ଯେ ଚନ୍ଦ୍ରିକା ଅବସ୍ଥା ବୋଝ ଉପରେ ନଳିତା ବିଡ଼ା ସଦୃଶ ହୋଇଗଲା ।

ନୂଆ ମାଁ ତାକୁ କେତେ କଷ୍ଟ ଦେଲେ, ହୁକୁମ୍ ଚଳାଇଲେ, ଗୋଟେ ନିରୀହ ଛୁଆର କରୁଣ ଚାହାଣୀ ବି ତାଙ୍କ ନାରୀ ମନରେ ଦୟା ଭାବ ଜାଗ୍ରତ କରାଇ ପାରିଲା ନାହିଁ । ବାପା ଏ ସବୁ ଦେଖି ବି ନୀରବ ରହିଲେ । ଅନ୍ତତଃ ସମବେଦନା ଟିକେ ବି ତାଙ୍କ ଠୁଁ ପାଇନି କେବେ ଚନ୍ଦ୍ରିକା । ନୂଆ କରି ସେ ଦୁନିଆକୁ ଦେଖିଥିଲା, ପିଲା ମନ ଉଡ଼ିବାର ସ୍ୱପ୍ନ ଦେଖୁଥିଲା କିନ୍ତୁ ପ୍ରସ୍ଫୁଟିତ ହେବାକୁ ଯାଉଥିବା ଫୁଲକୁ ଛିଣ୍ଡାଇଲା ପରି ଛିଣ୍ଡିଗଲା ତାର

 

କଅଁଳି ଉଠୁଥିବା ଡେଣା, ଉଭେଇଗଲା ଖୁସିରେ ଡ଼େଣା ମେଲେଇ ଉଡ଼ିବାର ସ୍ପୃହା । ନୂଆ ମାଙ୍କ ନୂଆ ଭାଇ ଆସିଲା, ନୂଆ ଭଉଣୀ ଆସିଲା ସେମାନେ ବଡ଼ ହେଲେ, ତାଙ୍କ ପାଇଁ ନୂଆ କଣ୍ଢେଇ, ନୂଆ ଖାତା, ନୂଆ ପେନ୍, ନୂଆ ବ୍ୟାଗ୍ ଆସିଲା ଅଥଚ ତାର ଭୁଲ୍ କଣ ତାକୁ ଏ ସବୁଠୁ ବଞ୍ଚିତ କରାଗଲା ସମବୟସର ଦିଟା ଛୁଆ ସେମାନେ ମିଠା ଖାଇ ପାରୁଥିଲେ ହେଲେ ସେ ପିଉଥିଲା ବାସି ତୋରାଣି, ସରକାରୀ ସ୍କୁଲ୍ କୁ ବସ୍ତାନି ଧରି ପାଠ ପଢିଗଲା, ଏତେ ଫରକ କଣ ପାଇଁ ଯେ, ତାର ବୋଉ ଆଉ ନାହିଁ ବୋଲି ? ହେଲେ ବାପା ତ ସେଇ ବାପା କେମିତି ସେ ଚୁପ୍ ରହୁଛନ୍ତି କୁନି ମନରେ ଉଙ୍କି ମାରେ ହଜାରେ ପ୍ରଶ୍ନ । ହେଲେ ନୂଆ ମାଁ ତାକୁ ଏମିତି ଗଢିଲେ ଯେ ସେ ଡରରେ ସବୁ ତାଙ୍କ କଥା ମାନି ଚାଲୁଥିଲା । ନୀରବି ଗଲା ନିରୀହ ଝିଅଟି । ସବୁ କଥାକୁ ମୁଣ୍ଡ ଟୁଙ୍ଗାରି ଗ୍ରହଣ କରି ନେଲା । କଷ୍ଟେମଷ୍ଟେ ଟିକିଏ ଦୟାରୁ ବି.ଏ ପାଠ ପଢିଲା । ତାକୁ ଘରର ସବୁ କାମ କରିବାକୁ ପଡୁଥିଲା ନହେଲେ ନୂଆ ମାଁ ଅଜାଡି ଦେଉଥିଲେ ତା ଉପରେ ଲାତ, ବିଧାର ପ୍ରହାର । ସେଇ ଛୋଟ ବେଳର ଦଶ ବର୍ଷରୁ ଆଜକୁ କୋଡ଼ିଏ ବର୍ଷ ତାକୁ ହେଲା କଣ ନ ସହିଛି ସିଏ । ରାତ୍ର ସମୟ ରେ ନିରୋଳା ବେଳାରେ ବସି ଦୂର ଆକାଶର ଚିକ୍ ମିକ୍ ତାରାକୁ ଚାହିଁ ପଚାରେ ବୋଉ ଲୋ ତୁ ଏକା କାହିଁକି ଚାଲିଗଲୁ ମତେ ବି ନେଇଥାନ୍ତୁ ମୁଁ ବି ତୋ ପାଖରେ ତାରା ହୋଇ ସବୁବେଳେ ତୋରି ପାଖରେ ଥାଆନ୍ତି । ଏ ଦୁନିଆ, ଏଠାକାର ଲୋକ ମତେ କେହି ବି ଭଲ ପାଆନ୍ତି ନି । ଅଜସ୍ର ଲୁହ ଢ଼ାଳି ଶୋଇପଡେ ସେମିତି । ଏ ଘରରେ ତାର ଅସ୍ତିତ୍ୱ କଣ ? ଭାଗ୍ୟକୁ ଆଦରି ପଡ଼ି ରହିଛି ଯାହା, ସେମିତି ବି ତାକୁ ନୂଆ ବୋଉ କେବେଠୁ ତଡ଼ି ସାରନ୍ତେଣି, ହେଲେ ତା ଦେଇ ଦୁଇ ପଇସା ଘରକୁ ଆସୁଛି ବୋଲି ତାକୁ ଗଣ୍ଡେ ମିଳୁଛି । ଚାହିଁଲେ ସେ ଘର ଛାଡ଼ି ଚାଲି ଯାଇ ପାରନ୍ତା ହେଲେ କେଉଁଠି କି ଯିବ ସିଏ ଯେଉଠି ନିଜ ଲୋକ ତାକୁ ଏମିତି

 

କରୁଛନ୍ତି ବାହାର ଦୁନିଆରେ କିଏ ପଚାରେ ତାକୁ ? ସେମିତି ବି ତା ମାଁର ଉପସ୍ଥିତିକୁ ସେ ଏ ଘରେ ଅନୁଭବ କରିପାରେ ତାକୁ ଛାଡ଼ି ସିଏ କୁଆଡେ ଯିବ ? ନିଜର କହିଲେ କେବଳ ସନ୍ତୋଷ, ଏଇ ସନ୍ତୋଷ ଦିନେ ତା ସିନିଅର୍ ଥିଲା, ତାକୁ ସାହାଯ୍ୟ କରୁଥିଲା ସବୁ କ୍ଷେତ୍ରରେ ସେ ହିଁ ତ କେବଳ ନିଜର । ବେଳେବେଳେ ନିଜ ଜୀବନକୁ ପିତା ଲାଗେ ଚନ୍ଦ୍ରମାର, ଲାଗେ ଯେମିତି ଭଗବାନ ତା ଭାଗ୍ୟରେ ସବୁ ଦୁଃଖ ଲେଖି ଦେଇଛନ୍ତି । କେତେ ଅଭିଶପ୍ତ ଜୀବନଟେ ତାର । ସ୍କୁଲରେ ଥିବା ସମୟରେ ଯାହା ତାର ଟିକେ ଶାନ୍ତି ନ ହେଲେ ଘରେ ଥିଲେ ହଜାରେ ଗଞ୍ଜଣା ଶୁଣେ ସେ ହେଲେ କିଛି କହିପାରେନା । ସନ୍ତୋଷ ସହ ବି ତାର ଦେଖା ଖୁବ୍ କମ୍ ହୁଏ, ସେ ତ କଟକରେ କେବେ କେବେ ଆସେ ଘରକୁ । ତାରି ଆଗରେ ଲୁହ ଝରାଇ ତାର ଦୁଃଖ କହେ, ସନ୍ତୋଷ ଆଶ୍ୱସନା ଦିଏ ବୁଝେ ତା ଅନ୍ତରକୁ । ଆଜି ଚନ୍ଦ୍ରିକା ପାଇଁ ବହୁତ୍ ଖୁସିର ଦିନ ସନ୍ତୋଷର ଚାକିରୀ ହୋଇଯାଇଛି ତେଣୁ ଖୁସିରେ ତା ପାଦ ମାଟିରେ ଲାଗୁନି ତାର ହଜାରେ ଗ୍ଲାନି ଯେମିତି ଦୁରେଇ ଯାଇଛି ପଦିଏ କଥାରେ । ଦି ଚାରିମାସ ପରେ ପ୍ରସ୍ତାବ ନେଇ ଯାଇଛନ୍ତି ଚନ୍ଦ୍ରିକା ପାଇଁ ସନ୍ତୋଷଙ୍କ ଘର ଲୋକେ । ନୂଆ ବୋଉ ପ୍ରଥମେ ଟିକିଏ ଖିସେଇ ହୋଇ ଯାଇଛନ୍ତି ଏ ଅଲାଜୁକୀ ପାଇଁ ଏତେ ସୁନ୍ଦର ବର ମିଳିବାରୁ, ପୁଣି ଭାବିଛନ୍ତି ତାଙ୍କର କଣ ଯାଉଛି ସେ ଗଲେ ଭଲ କେତେଦିନ ଆଉ ୟାକୁ ଏଠି ରଖି କି ମାଗଣାରେ ସବୁ କରୁଥିବୁ ବୋଲି ନୂଆ ମାଁ ପ୍ରସ୍ତାବରେ ରାଜି ହୋଇଛନ୍ତି । ସନ୍ତୋଷର ଘର ଲୋକେ ମଧ୍ୟ ଚନ୍ଦ୍ରିକାର ରୂପ ଗୁଣରେ ଖୁସି ହୋଇଛନ୍ତି । ସେମାନେ ବାହାଘର ମଧ୍ୟ ଯଥାଦିନରେ ସ୍ଥିର କରିଛନ୍ତି । ବାହାଘର ସରିଛି । ଚନ୍ଦ୍ରିକା ନୂଆ ଜୀବନଟେ ପାଇଛି, ତାର ମନର ମଣିଷ ଆଜି ତା ଖୁବ୍ ନିକଟରେ । ଦୁହିଁଙ୍କ ଜୀବନ ବେଶ୍ ହସ ଖୁସିରେ ଚାଲିଛି । ଜୀବନ ବଗିଚାର ମନମୁଗ୍ଧକର ପରିବେଶରେ ଗଛ ଉହାଡ଼ରେ ଯେମିତି ପ୍ରେମ

 

ସଙ୍ଗୀତ ଗାଉଛନ୍ତି କୁହୁ କୁହୁ ତାନରେ ଅନୁଭବ କରୁଛନ୍ତି ସେହି ସଙ୍ଗୀତର ସାତ ସୁରକୁ । ଚନ୍ଦ୍ରିକା ଏବେ ଅନ୍ତଃସତ୍ତ୍ୱା, ସେମାନଙ୍କ ଜୀବନକୁ ନୂଆ ଜଣେ ଅତିଥିକୁ ସେମାନେ ସ୍ୱାଗତ କରିବାକୁ ଯାଉଛନ୍ତି ଅତଏବ ଦୁହେଁ ବହୁତ ଖୁସି । ଚନ୍ଦ୍ରିକାର ଶାଶୁ ଯଦିଓ ଉପରେ ଭଲ କଥା ଲାଗନ୍ତି, ଅନ୍ତରେ ଘୃଣା କରନ୍ତି ତାକୁ ତାର କାରଣ ବି ଅଛି ସେ ଯେତେ ଯୌତୁକ ଆଣିବାର କଥା, କଥା ପ୍ରସଙ୍ଗରେ ଉଠା ଯାଇଥିଲା, ତା ବାପା ତାକୁ ଦେଇନାହାନ୍ତି, ଏଥିରେ ବିଚାରିର ଦୋଷ କଣ ଯେ ? ଶାଶୁ ମଝିରେ ମଝିରେ ଶୁଣେଇ ଶୁଣେଇ କହୁଥିଲେ ଯେ ମୋର ନାତି ଟୋକା ଆସିବ ବୋଲି କାରଣ ସେ ଝିଅ ଛୁଆ ହେଉ, ବୋଲି କଦାପି ଚାହୁଁନଥିଲେ । କିନ୍ତୁ ସନ୍ତୋଷ ସବୁବେଳେ ସୁଖକର କଥା କହୁଥିଲା ବୁଝୁଥିଲା ଆଉ ବୁଝାଉଥିଲା ଚନ୍ଦ୍ରିକାକୁ । ଜୀବନର ଏମିତି ହସ ଖୁସିର ସମଷ୍ଟିରେ ଦିନେ ମାଡ଼ିଆସିଛି ଅକାଳ ଝଡ଼, ଯାହା ଛିନ୍ ଭିନ୍ କରିଦେଇଛି ଚନ୍ଦ୍ରିକାର ହୃଦୟକୁ । କାମରୁ ଫେରୁଥିବା ବେଳେ ସନ୍ତୋଷଙ୍କ ଅଚାନକ୍ ଦୁର୍ଘଟଣାରେ ମୃତ୍ୟୁ ଘଟିଛି । ଭାଙ୍ଗି ଯାଇଛି ତାର ସ୍ୱପ୍ନ, ଆକାଂକ୍ଷା, ଆଶା ପ୍ରତ୍ୟାଶା ସବୁ । କହୁଛି ସେ ଲୁହ ବନ୍ୟା ବୁହାଇ, ମୋର କେଉଁ ଜନ୍ମର ଦୋଷର ଦଣ୍ଡ ଭଗବାନ ! ମୋର ସବୁ ତ ମୋ ଠୁଁ ଛଡେଇ ନେଲ ମୋ ମାଁ, ମୋ ସୁଖ, ଶାନ୍ତି, ହସ ସବୁକିଛି, ଶେଷକୁ ଯିଏ ମୋ ଓଠରେ ହସ ଦେଉଥିଲା, ମୋ ଅନ୍ତର୍ଦାହ ମରମକୁ ବୁଝି ମତେ ବୁଝୁଥିଲା.. ମୋ ସନ୍ତୋଷକୁ ବି ନେଇଗଲ ? ହେ ଭଗବାନ ମୋ ପ୍ରତି ଭାଗ୍ୟର ଏ କେମିତି ଉପହାସ । ପ୍ରଚଣ୍ଡ ଆଘାତ ଲାଗିଲା ତାର ମନରେ । ଏତେ ବଡ଼ ଦୁନିଆରେ ସେହି ତ ଏକା ଥିଲା ଯିଏ ତାକୁ ଭଲ ପାଉଥିଲା ହେଲେ ଭଗବାନ ତାକୁ ବି ତା ଠାରୁ ନେଇଗଲେ । ଦିନ ଅତିକ୍ରମ ହୋଇଯାଇଛି ସେ ହୋଇଯାଇଛି ଏକାନ୍ତ ନିଃସ୍ୱ, ଅସହାୟା । ନାନା ଲୋକଙ୍କ ନାନା ଗଞ୍ଜଣା ସହିଛି ସେ । ମରିବାକୁ ଚାହୁଁଛି ଯେଉଁ ଦୁନିଆରେ ତା ସ୍ୱାମୀ ଠାରୁ ଆଉ କେହି ତାହାକୁ ପଚାରି ନାହାଁନ୍ତି

 

କି ପଚାରିବେ ନି ମଧ୍ୟ । ହେଲେ ତାକୁ ବଞ୍ଚିବାକୁ ହେବ ତା ଛୁଆ ପାଇଁ ତାରି ଆଖିରେ ସେ ଏ ଦୁନିଆକୁ ଦେଖିବେ, ସିଏ ସନ୍ତୋଷଙ୍କ ଅଂଶ ଅଟେ । ଇତି ମଧ୍ୟରେ ତାକୁ ବହୁତ୍ ଅତ୍ୟାଚାର ସହିବାକୁ ପଡ଼ିଥିଲା ଏକେରେ ତ ତାର ପ୍ରିୟ ପୁରୁଷ ନାହିଁ ଦୁଇରେ ସେ ଗର୍ଭବତୀ ସେଥିରେ ପୁଣି ତାଙ୍କ ପରିବାର ଲୋକେ ଅସହାୟର ସୁଯୋଗ ନେଇ ତା ଉପରେ ନାନା ଅବିଚାର କରି କରିଛନ୍ତି । ହେଲେ ଏବେ ସେ କୁଆଡେ ଯିବ ? ତା ପେଟରେ ଯେ ଛୁଆ, ତାକୁ କୁଆଡେ ନେଇ ସେ ଯିବ ଏ ନିଷ୍ଠୁର ଦୁନିଆ କଣ ତାକୁ ଆହା ପଦେ କହିବ ? ଭାଗ୍ୟକୁ ଆଦରି ପଡ଼ି ରହିଲା ସେଠି । ଯଥା ସମୟରେ ତାକୁ କନ୍ୟାରତ୍ନଟିଏ ପ୍ରାପ୍ତ ହେଲା, ଖୁସିରେ ତା ଆଖିରୁ ପାଣି ବାହାରିଗଲା, ଭାବିଲା ସନ୍ତୋଷ ଥିଲେ କେତେ ଖୁସି ହୋଇ ନଥାନ୍ତେ ? ଏ ପଟେ ଶାଶୁ ତାକୁ ନାନା କଥା କହି ତା ଉପରେ ଦାଉ ସାଧୁଥାନ୍ତି । କହନ୍ତି - "ହଇରେ ପୋଡ଼ାମୁହିଁ ଅଲାଜୁକୀ ଛୁଆ ଥିଲାବେଳେ ତୋ ମାଆକୁ ଖାଇଲୁ ଏଠି ମୋ ପୁଅକୁ ଖାଇଲୁ । ଯଉତୁକ ତ ତୋ ସେଇ ବୋପା ଦେଲାନି, କାଳେ ବଂଶ ଟା ବଞ୍ଚିବ ବୋଲି ତତେ ରଖିଲି ଯେ ଶେଷରେ ପୋଡ଼ାମୁହିଁ ପେଟରୁ ପୋଡ଼ାମୁହିଁ ଝିଅ ଜନ୍ମ କଲୁ, ମୋ ବଂଶ ବୁଡ଼ାଇ ଦେଲୁରେ ! ଏହିଭଳି କେତେ କଥା ନ ସହିଛି ସିଏ, ତା ଜୀବନ ବି କେଉଁ ସ୍ଥିତି ଦେଇ ଗତି କରୁଛି କେଜାଣି ହଜାରେ ମୋଡ଼ । ଆଜି ସେ ଜୀବନ ଯମୁନାର ଜଳଧାରାରେ ଗତି କରୁଛି ଶୁଷ୍କ ତୃଣ ପରି, କେତେ ବିଘ୍ନ ନ ଆସିଛି ତା ଜୀବନରେ ସବୁକୁ ତ ସେ ମାଖି ଦେଇଛି ପ୍ରସାଦ ପରି । ସତରେ ଭଗବାନ ବଡ଼ ନିଷ୍ଠୁର । ଯାହାକୁ ଦୁଃଖ ଦିଅନ୍ତି ଚିରଦିନ ଏମିତି ଦୁଃଖ ଦିଅନ୍ତି.... । ତା ଶାଶୁ ଘରେ ତାକୁ ସମ୍ପୂର୍ଣ୍ଣ ଭାବରେ ତ୍ୟାଗ କରିଛନ୍ତି ତାକୁ ପଚାରି ନାହାଁନ୍ତି କିଛି ତାକୁ ପରିବାରର କୌଣସି କଥାରେ ସାମିଲ୍ କରି ନାହାଁନ୍ତି, ହେଲେ ଏ ଘରର ବୋହୂ ହିସାବରେ କଣ ତାର ଅଧିକାର ନାହିଁ ? ଏମିତି କି ତାକୁ ଖାଇବାକୁ ବି ଦେଇ ନାହାଁନ୍ତି ।

 

ଦରମରା ଅବସ୍ଥାରେ ଛୁଆକୁ ନେଇ ବସିଛି ଘରର କେଉଁ ଅପରିଷ୍କାର କୋଣରେ ଚନ୍ଦ୍ରିକା । ଭୋକ ଶୋଷରେ ଜଳି ଯାଉଛି ତା ଉଦର, ନିଜେ ନ ଖାଇବାରୁ ତା ଦେହ ଅବଶ ଅଶକତ ହୋଇ ପଡ଼ିଛି କ୍ଷୀର ନ ହେବାରୁ ଛୁଆ ବି ବିକଳରେ କାନ୍ଦୁଛି । ଅନୁନୟ ହୋଇ ଘର ଲୋକଙ୍କୁ ମାଗିଛି ଲୁହ ଢାଳିଛି, ହେଲେ ଏତେ ସତ୍ତ୍ୱେ ମଧ୍ୟ ତାକୁ ପଚାରି ନାହାଁନ୍ତି କେହି କେହି ତା ଉପରେ ଟିକେ ବି ଦୟା ଦେଖାଇଲେ ନାହିଁ । ଛୁଆର ବିକଳ କାନ୍ଦ ଆଉ ପେଟର ଭୋକକୁ ସହି ନପାରି ଗୋଡ଼ କାଢିଛି ଶାଶୁଘରୁ, ଯେଉଁଠି ଶାନ୍ତିରେ ରହିବ ଭଲରେ ଟିକେ ଖାଇବ । ପିଲାକୁ ଧରି ଚାଲିଯାଇଛି ତା ଶାଶୁ ଘରରୁ ବହୁତ ଦୂରକୁ । ଅନୁସନ୍ଧାନ କରୁଛି ଖାଦ୍ୟ, ଯାହାକୁ ଦେଖୁଛି ହାତ ପତେଇ ମାଗିଛି ନିଜର ଆଉ ନିଜର ଛୁଆର ନିରୀହ ଚାହାଣୀ ଦେଖାଇ... ହେଲେ ଏ ସମାଜର ଲୋକ କେବେ କାହାକୁ ଆଉ କେଉଁଠି ଦୟା ଦେଖାଇଛି ଯେ ଆଜି ଦେଖାଇବ ? କେଉଁଠି କାମ ପାଇଁ ବି କହିଛି ସବୁଠି ନିରାଶ ହୋଇଛି । ଛୁଆ ଆଖିରେ ଲୁହ, ଲୁହ ପୁଣି ମା'ର ଆଖିରେ ମଧ୍ୟ । ଖାଦ୍ୟ ପାଇଁ ଏଣେତେଣେ ଦୌଡିଛି, ଏଇଠୁ ସେଇଠୁ ପାଣି ପିଇ ପିଇ ତିନି ଦିନ ତିନି ରାତି ବଞ୍ଚାଇ ରଖିଛି ଦୁହିଁଙ୍କ ପ୍ରାଣ । ସବୁଠି ହତାଶ ହୋଇଛେ, ଦେଖିଛି ଯାହାକୁ ବି କିଛି ମାଗୁଛି ଅନୁନୟ କରୁଛି ତାକୁ ମଧ୍ୟ କିଛି ମାଗିବାର ଲୋଲୁପ ଦୃଷ୍ଟି ତା ଉପରେ ନିକ୍ଷେପ କରିଛିନ୍ତି ନିଜକୁ ତଥା ନିଜ ପିଲାକୁ ବଞ୍ଚାଇବାକୁ ଯାଇ ସଜାଇଛି ନିଜକୁ ବେଶ୍ୟା । ହେଲେ ବହୁତ ଡେରିରେ, ତାର ସନ୍ତୋଷର ଶେଷ ସନ୍ତକ ତା ଛୁଆକୁ ହରାଇ ବସିଛି ସବୁଦିନ ପାଇଁ । ଲୋଟି ପଡିଛି ସେ ସେଇ ଭୂଇଁରେ, ଆଉ କିଏ ରହିଲା ଯେ ତାର ଦୁନିଆରେ ସବୁ ସରିଲା, ବିକଳ ହୋଇ ଚାହିଁଛି ଛୁଆକୁ । ନାନା ପ୍ରକାର ଗାଳି କରି ବସିଛି ସେ, ଫିଙ୍ଗି ଦେଇଚି ଭଗବାନଙ୍କ ଉପରେ ତାର କ୍ରୋଧ । ଫାଟି ଯାଇଛି ତାର ଛାତି, ଦୁଃଖରେ ଜର୍ଜରିତ ତାର ଦେହ ମନ ସମଗ୍ର ପ୍ରାଣ ।

 

କହିଛି-:"ସାରା ଜୀବନ ତୁମ ଉପରେ ଆସ୍ଥା ରଖି ଚାଲିଲି ଭଗବାନ କାହିଁ ମତେ ଏତେ ଦୁଃଖ ଦେଲ ? ମୋ ଅତି ଅନ୍ତରଙ୍ଗ ମଣିଷ ମାନଙ୍କୁ ଗୋଟି ଗୋଟି କରି ନେଇଗଲ ? ଶେଷରେ ମାତୃତ୍ୱର ସ୍ନେହ ମୋ ସନ୍ତୋଷର ଅଂଶକୁ ନେଇ ବଞ୍ଚିବାର ସ୍ୱପ୍ନକୁ ବି ମୋର ଭାଙ୍ଗିଦେଲ । ଭୀଷଣ କଷ୍ଟ ଅନୁଭବ କରିଛି ଚନ୍ଦ୍ରିକା ତାର ଛାତିର କେଉଁ କୋଣରୁ । ଆଚମ୍ବିତ ଭାବରେ ହସି ଉଠିଛି ଚନ୍ଦ୍ରିକା, ଭୁଲି ଯାଇଛି ନିଜକୁ, ଭୁଲି ଯାଇଛି ତା ଛୁଆକୁ, ଭୁଲିଯାଇଛି ମନର ପ୍ରିୟ ମଣିଷକୁ ଭୁଲିଯାଇଛି ତାର ଜୀବନର ଅତୀତର ଯନ୍ତ୍ରଣା ଯାତନା, ଭୁଲି ଯାଇଛି ତାର ଅପମାନ, ଅପବାଦକୁ, ଭୁଲି ଯାଇଛି ସବୁ କିଛି । ହଁ ଦେଖା ଯାଇଛି ତାକୁ ଏ ଦୁନିଆ ଅଭିଶପ୍ତ । ହୋଇଯାଇଛି ପାଗେଲି, ସହରର ଗଳି କନ୍ଦିରେ ବୁଲି ବୁଲି ଖାଉଚି ପଚା ଖାଦ୍ୟ, ଫୁଟପାଥ୍ ହୋଇ ଯାଇଚି ତା ରହିବା ଜାଗା । କେତେବେଳେ ଯଦି କିଛି କାହାକୁ ଭୋକରେ ମାଗିଛି କୁକୁର ବିଲେଇ ଭଳି ଦୂର୍ ଦୂର୍ କହି ଘଉଡାଇ ଦିଆ ଯାଇଛି । ମଣିଷ ଭଗବାନଙ୍କ ଆଶିର୍ବାଦ ବୋଲି କୁହାଯାଏ, ହେଲେ ଚନ୍ଦ୍ରିକା ତ ଆଶିର୍ବାଦ ନୂହେଁ, ଅଟେ ସେ ଅଭିଶାପ । କେଜାଣି କେଉଁ ଜନ୍ମର ଅଭିଶାପ ଘେନି ଆସିଥିଲା ଏତେ ସବୁ ଦୁଃଖକୁ ନେଇ ପିଇଗଲା ସବୁ ଲୁହ ଆଉ କୋହର ଯନ୍ତ୍ରଣାକୁ । ତାର କଣ ଭୁଲ୍ ଥିଲା, ସେ କିନ୍ତୁ ଅଭିଶପ୍ତା ଝିଅଟେ ଭଗବାନଙ୍କ ନିକଟରେ ।

ଜିଲ୍ଲା :ବରଗଡ଼

ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ସମ୍ବଲପୁର ବିଶ୍ୱବିଦ୍ୟାଳୟ ବୁର୍ଲା

 

# ଶ୍ୟାମଳି



ରୁଦ୍ରକାନ୍ତ
ରାଉତରାୟ

"ଶ୍ୟାମଳି", ଯେମିତି ଆମ ଗାଁର ଏକ ଜଣାଶୁଣା ନାଁ । ବାହାଘର, ବ୍ରତଘର, ଯାନି ଯାତରା, ଯେକୌଣସି ପର୍ବରେ ଶ୍ୟାମଳିର ନାଁ ଆଗ ଡାକରା । ଯେମିତି ତା ବିନା ସବୁ କାମ ଅଧୁରା । ବୟସ ଏବେ କୋଡିଏ ଛୁଇଁଲା । ମାଟ୍ରିକ ପରେ ବାପା ମା' ଛେଉଣ୍ଡ ପିଲାଟା ଆଉ ପାଠ ପଢି ପାରିଲାନି । ଆମ ଗାଁ ଶେଷ ମୁଣ୍ଡ ତା ମଉସା ଘରେ ରହୁଛି । ଏତେ କମ୍ ବୟସରୁ ସେ ଯେ ଏତେ ବୁଦ୍ଧିମତୀ ତା କାମକୁ ନଦେଖିଲେ ହୁଏତ ବିଶ୍ୱାସ କରିବା ସହଜ ନୁହେଁ । ସେଦିନ ଶ୍ୟାମଳି ପାଇଁ ତା ମଉସା ପ୍ରସ୍ତାବଟିଏ ଦେଖିଲେ, ପିଲାଟି ଆମ ପଂଚାୟତ ସରପଞ୍ଚଙ୍କ ଡ୍ରାଇଭର । ଶ୍ୟାମଳିର ଖୁସି ଆଉ ଦୁଃଖକୁ ତା ମୁଖ ମଣ୍ଡଳରୁ ବୁଝିବା ଏତେ ସହଜ କଥା ନୁହଁ । ତା ମୁହଁର ନାଲି ପାଖୁଡା ମନ୍ଦାର ଫୁଲ ପରି ହସ କେବଳ ତା ଖୁସି ବଖାଣିଥାଏ । ସେଇଦିନ ସଂଜରେ ସେ ଆମ ଗାଁ ନଈ ପଠାରେ ଏକା ବସିଥାଏ । ଆରେ ଏ କଣ ? ହସ ଜର ଜର ମୁହଁରେ ଲୁହ । ମୁଁ ବି ଆଶ୍ଚର୍ଯ୍ୟ ହେଇଗଲି । ଟିକକ ଆଗରୁ ହସୁଥିବା ଝିଅଟା କଣ ଏକା ଏକା ବସି କାନ୍ଦୁଛି ? କିଛି ସମୟର ବ୍ୟବଧାନରେ ଆସି ପହଞ୍ଚିଲା ରବି । ଆମ ଗାଁ ପ୍ରଧାନ ମାଷ୍ଟ୍ରେଙ୍କ ପୁଅ । ସେଦିନ ତାଙ୍କର କଥା ମୋତେ ବ୍ୟଥିତ କରିଦେଇଥିଲା ।

ଶ୍ୟାମଳି : ମୁଁ ତୋତେ ବାହା ହୋଇପାରିବିନି ।

ରବି : ଜାଣିଛି ।

 

ଶ୍ୟାମଳି : କଣ ଜାଣିଛୁ ଯେ, ମୋ କୋକେଇ ତୋ ଘର ବାଟ ଦେଇ କେବେ ଯିବ ଏଇଆ ତ ।

ରବି : ସେ କଥା ନୁହଁ, ସରପଞ୍ଚ ତାହେଲେ ତା, ପସାପାଲିରେ ତୋ ମଉସାଙ୍କୁ ଫସେଇଦେଲା ।

ଶ୍ୟାମଳି : କହ ମୁଁ ଜାଣି ଶୁଣି ଫସିଛି । ମୁଁ ଯଦି ସେ ପିଲାକୁ ନ ବାହା ହୁଏ, ତେବେ ସରପଞ୍ଚ ପାଞ୍ଚ ଲକ୍ଷ ଟଙ୍କା ଦେବନି କି ମୋ ଭଉଣୀ (ମଉସା ଝିଅ) ରୁନିର ବାହାଘର ହେଇପାରିବନି ।

ରବି : ସବୁ ଜାଣିଛି, ହେଲେ ଖାଲି ଏତିକି ଭାବିଛି ସେ ଚଣ୍ଡାଳ ସରପଞ୍ଚ ଟା .... ?

ପାଟିରେ ହାତ ଦେଇ ଶ୍ୟାମଳି ରବି ଆଖିର ଲୁହକୁ ତା ପଣତରେ ପୋଛି ଦେଇ ଦୌଡି ଚାଲିଯାଇଥିଲା ସେଦିନ । ବାସ ତା ପରେ ରବି ସାମ୍ବାଦିକତା କରିବା ନିଶାରେ ଜର୍ଣ୍ଣାଲିଜିମ କରିବାକୁ ଦିଲ୍ଲୀ ଚାଲିଗଲା । ଶ୍ୟାମଳି ମଧ୍ୟ ମଉସାଙ୍କ ମନ ପସନ୍ଦର ପୁଅକୁ ବାହା ହେଲା । ମାତ୍ର ବିଡମ୍ବନା ଯେ ଯଉ ଶ୍ୟାମଳି ପାଇଁ ତା ବିଦାୟରେ ସାରା ଗାଁ କାନ୍ଦୁଥିଲା, କିନ୍ତୁ ସେଦିନ କନିଆ ସାଜିଥିବା କଥାକୁହା ସାରୀଟି ସଂପୂର୍ଣ୍ଣ ନୀରବ ହୋଇ ଯାଇ ଗାଡିରେ ବସିଲା । କେହି ନଜାଣିଲେ ବି ମୁଁ ଠିକ୍ ବୁଝି ପାରୁଥାଏ ତା ବେଦନା ଜଡିତ ମରମର ଅକୁହା କଥାକୁ ।

କିଛିଦିନ ଅତିକ୍ରାନ୍ତ ହେଲା, ସପନ ଡ୍ରାଇଭର ସହ ହସଖୁସିର ଜୀବନ ମଧ୍ୟ କାଟିଲା ଶ୍ୟାମଳି । ପ୍ରତ୍ୟହ ରାତିରେ ମଦ ପିଇ ଆସେ ସପନ । ହେଲେ ଆମ ଶ୍ୟାମଳି ତ ସର୍ବଂସହା, ସବୁକିଛି କୁ ଖୁବ ସୁନ୍ଦର ଭାବେ ସମ୍ଭାଳି ନେଉଥିଲା ସେ । ଦିନେ ସରପଞ୍ଚ ସପନକୁ ମଦ ନିଶାରେ ମତୁଆଲା କରି ଶ୍ୟାମଳିକୁ ପ୍ରେମ ନିବେଦନ କରେ, ଆଉ ଶ୍ୟାମଳିର "ନାଁ" କୁ ବରଦାସ୍ତ ନକରି ସରପଞ୍ଚ ସେଦିନ ତା ପ୍ରତି ବଳତ୍କାର ଉଦ୍ୟମ ମଧ୍ୟ କଲା । ମାତ୍ର ଶ୍ୟାମଳି ସେ ପରିସ୍ଥିତିରୁ ମୁକୁଳି ସପନକୁ ସେ ସବୁ କହିଲେ ବି ସରପଞ୍ଚ ପ୍ରତି ସପନର ଥିବା ବିଶ୍ୱାସ ଏସବୁ କଥାକୁ ମାନିବାକୁ ତା ବିବେକ ପ୍ରତିବନ୍ଧକ ସୃଷ୍ଟି କଲା । ମାତ୍ର ସେଇଦିନ ଠାରୁ

 

ସପନକୁ ସରପଞ୍ଚ କାମରୁ ବାହାର କରିଦେଲା । ହଠାତ୍ ଦିନେ ସପନ ଦିନ ମଜୁରୀ ପାଇଁ ବାହାରୁଥାଏ, ତଳେ ଦୁମ୍ କରି କଚାଡି ହୋଇପଡିଲା । ବିବ୍ରତ ଅବସ୍ଥାରେ ଶ୍ୟାମଳି ତାକୁ ହସ୍ପିଟାଲ ମଧ୍ୟ ନେଲା । ମାତ୍ର ଡାକ୍ତରଙ୍କର କଥା ଶୁଣି ଶ୍ୟାମଳି ମଧ୍ୟ କିଛିକ୍ଷଣ ପାଇଁ ନିରବ ହୋଇ ଲଥ କରି ସେଇ ଚଟାଣରେ ବସିପଡିଲା । ସପନକୁ ବ୍ରେନ୍ ଟ୍ୟୁମର ଅପରେସନ ହବ, ଦରକାର ପାଞ୍ଚ ଲକ୍ଷ ! କଣ କରିବ ? କୁଆଡେ ଯିବ ? କାହାକୁ କହିବ ? ଶ୍ୟାମଳି ଚିନ୍ତା କଲା ପାଇଟି କରିବ, ହେଲେ ସେ ଜାନୁଆର ସରପଞ୍ଚ ପାଖକୁ କେବେ ହାତ ପାତିବାକୁ ଯିବନି । ଦିନକୁ ଦିନ ସପନର ଦେହ ଖରାପ ହେବାକୁ ଲାଗେ । ମାତ୍ର ୩ ଶହ ଟଙ୍କା ଦିନକୁ ରୋଜଗାର କରି ସେ କେମିତି ସ୍ୱାମୀର ଜୀବନ ବଂଚେଇବ ସେ କଥା ଚିନ୍ତା କରି ସବୁବେଳେ ହସି ହସାଉଥିବା ଶ୍ୟାମଳି ଆଖିରୁ ଲୁହ ଶୁଖୁନଥାଏ । ଦିନେ ରାତି ଅଧରେ ଦର ଆଉଜା ଦାଣ୍ଡକବାଟକୁ ଡେରିହୋଇ ବସି ଶ୍ୟାମଳି ପୁନେଇଁ ଜହ୍ନକୁ ସେମିତି ଚାହିଁଥାଏ, ଏକ ଖୋଜିଲା ଶୋଷିଲା ଚାତକୀଟିଏ ପରି । ଅର୍ଦ୍ଧ ମୁକୁଳିତ କେଶ ରାଜି ଲୋଟି ଭୂଇଁରେ ପଡିଥାଏ । ପଣତ ଟା ଭୂଇଁରେ ଅପ୍ରତ୍ୟାସିତ ଅବସ୍ଥାରେ ପଡିଥାଏ । ଆରେ ଏ କଣ ଶ୍ୟାମଳି ଆସି ଜାତୀୟ ରାଜପଥରେ ! ହଠାତ୍ ଜଣେ ମହିଳା ଆସି ତୀବ୍ର ଗତିରେ ଆସୁଥିବା ଯାନ୍ତ୍ରିକ ମୋଟର ଦାନବ ଆଗରୁ ଶ୍ୟାମଳିକୁ ରକ୍ଷା କଲେ । ଚେତାକୁ ଫେରିବା ପରେ ଶ୍ୟାମଳି ଥିଲା ସେ ମହିଳାର ଘରେ । ମାତ୍ର ଏଇଟା କଣ ଘର ? ଆଖି ଖୋଲି ଦେଖେ କ୍ୟାମେରା ଲାଗିଛି, କିଛି ଝିଅ ପିଲାମାନେ ବସି ଜଣେ ମାଇକ୍ ଧରି ପଚାରୁଥିବା ଲୋକଟିକୁ କଣ ସବୁ କହୁଛନ୍ତି, ଧୀର କଣ୍ଠରେ ଶ୍ୟାମଳି କହି ଉଠିଲା ମୁଁ କଉଠି, ତା ପାଟିକୁ ଚୁପ କରି ଗୋଟେ ଝିଅ କହି ଉଠିଲା, "ଡକ୍ୟୁମେଣ୍ଟାରୀ ଚାଲିଛି, ଚୁପ୍ ବସ ।"

ଇଣ୍ଟରଭ୍ୟୁ ସରିଲା ଶ୍ୟାମଳିକୁ ଉଦ୍ଧାର କରିଥିବା ମହିଳା ଜଣକ, ଶ୍ୟାମଳି ଠୁ ସବୁ କିଛି ପଚାରି ବୁଝିଲା । ଆଉ ତାକୁ ସର୍ତ୍ତ ରଖି ପାଞ୍ଚଲକ୍ଷ ଟଙ୍କାର ଲୋଭ ମଧ୍ୟ ଦେଖେଇଲା ଯଦି ସେ ତା ପାଖରେ ରହି ବେଶ୍ୟା ବୃତ୍ତି କରେ ତେବେ ? କଥାଟା ହଠାତ୍ ଶ୍ୟାମଳିର ମସ୍ତିଷ୍କରେ

 

ବିଭ୍ରାନ୍ତି ସୃଷ୍ଟି କଲା । ମାତ୍ର ଉପାୟଶୂନ୍ୟ ଶ୍ୟାମଳି । ଚିନ୍ତା କରିବ କହି ଲେଉଟି ଆସି ସ୍ୱାମୀ ମୁଣ୍ଡକୁ ଆଉଁସି ତାରି ଗୋଡ ପାଖରେ ପଡିରହି କାନ୍ଦି ଉଠିଲା ।

ହଠାତ୍ କୋମଳ କଣ୍ଠରେ ଶବ୍ଦ ଶୁଭିଲା 'ଶ୍ୟାମଳି' କବାଟ ଖୋଲି ଦେଖେ ରବି !

ଶ୍ୟାମଳି : ତୁ ଏଠି ?

ରବି : ଡକ୍ୟୁମେଣ୍ଟାରୀ କରିବାକୁ ସେ କୋଠିକୁ ଯାଇଥିଲି ହେଲେ ତୋତେ ସେଠି ଦେଖି .. ?

ଶ୍ୟାମଳି : ଓଃ, ତାହେଲେ ତୁ ମୋ ଅସଲ ରୂପକୁ ଦେଖିଲୁ ଆଉ ଜାଣିଲୁ ଯେ ମୁଁ ଗୋଟେ .. ?

ରବି : ନାଁ, ମୁଁ କିନ୍ତୁ ବିଶ୍ୱାସ କରିପାରୁନି । ଶ୍ୟାମଳି ମୁହଁରୁ ସବୁ କଥା ଶୁଣିବା ପରେ ରବି ଶ୍ୟାମଳି ପାଇଁ ଆଶାର ଆଲୋକ ସଦୃଶ ସପନର ଚିକିତ୍ସା ପାଇଁ ଦିଲ୍ଲୀ ପଠେଇଲା ତା ପୁଣି ତାର ବନ୍ଧୁ ନିକଟରେ । ଟିକେଟ ହେଲା ସପନକୁ ସାଙ୍ଗରେ ଧରି ଶ୍ୟାମଳି ଚାଲିଲା ଦିଲ୍ଲୀ । ଡାକ୍ତର ଦେଖି ମାଗଣା ଚିକିତ୍ସା କରିବାକୁ କହିଲେ । ମାତ୍ର ସେଠିବି ଥିଲା ସର୍ତ୍ତର ପାଚେରୀ । ଡାକ୍ତରଙ୍କ ଦେହର ଭୋକ ପାଖରେ ଶ୍ୟାମଳିର ସ୍ୱାମୀଙ୍କ ଜୀବନର ମୂଲ୍ୟ ବହୁତ ଅଧିକ ଥିଲା ସେଦିନ । ଏପଟେ ସପନ ଗଲା ଓ.ଟି କୁ ଆଉ ଶ୍ୟାମଳି ଗଲା ଡାକ୍ତରର ବେଡ୍‌କୁ । ଡାକ୍ତର କିନ୍ତୁ ସର୍ତ୍ତ ରଖିଲେ "ମୋ ବନ୍ଧୁ ରବିକୁ ଏ କଥା କହିବନାହିଁ ।" ଭଲ ଡାକ୍ତର ଦେଇ ଅପରେସନ କରେଇଲି ସେ ଖୁବଶୀଘ୍ର ଭଲ ହୋଇଯିବେ । ଶ୍ୟାମଳି ମୁହଁରେ ସେଦିନ ଥିଲା ସ୍ମିତହାସ୍ୟ ଭାବୁଥିଲା "ସ୍ୱାମୀଙ୍କୁ ବଂଚେଇ ଋଣୀ କଲ, ହେଲେ ରବି ପରି ଦେବତୁଲ୍ୟ ମଣିଷର ବନ୍ଧୁ ଯେ ଜଣେ ନାରୀ ମାଂସ ଲୋଭୀ ପଶୁ ସେକଥା ହୋଇନପାରେ", ସ୍ୱାମୀ ସ୍ତ୍ରୀ ଘରକୁ ଫେରିଲେ । ଭଲହୋଇ ଆଗଭଳି ସପନ କାମକୁ ଗଲା । ଦିନେ ହଠାତ୍ ମଦ ପିଇ ସପନ ଆସି ଶ୍ୟାମଳିକୁ ଅକଥନୀୟ ଅତ୍ୟାଚାର କଲା ଏକ ଫଟୋ ଦେଖେଇ ବେଶ୍ୟା ବୋଲି ସମ୍ବୋଧନ ମଧ୍ୟ କଲା । ଶ୍ୟାମଳିର ସବୁ କୈଫିୟତ ପାଣି ଫୋଟକା ପରି ମେଳେଇଗଲା । ରାତି ଅଧରେ ଶ୍ୟାମଳି ଗଳାରେ ଧକ୍କା ଦେଇ ତାକୁ ଘରୁ ବାହାର ମଧ୍ୟ କରିଦେଲା । ଶ୍ୟାମଳି ଶେଷରେ ଆତ୍ମହତ୍ୟା କରିବାକୁ ନିଷ୍ପତ୍ତି ନେଇ ଚାଲିଲା ଟ୍ରେନ୍ ଲାଇନ୍ ଆଡ଼କୁ ।

 

ରେଳ ଲାଇନରେ ଶୋଇ ଭାବୁଥାଏ ତାର ଅତୀତର ଚିରିଲାଏ ଅଭୁଲା ସ୍ମୃତିକୁ । ରେଳ ଆସୁଛି, ଆଉ ମାତ୍ର ଖଣ୍ଡେ ବାଟ, ସାଇରନ୍, ଓଃ ... ହଠାତ୍ ରବି ଆସି ଘୋଷାରି ନେଇ ଶ୍ୟାମଳି ଗାଲକୁ ଶକ୍ତ ଚାପୁଡା ମାରେ । ଶ୍ୟାମଳି ଠାରୁ ସବୁକଥା ଶୁଣି ତାକୁ ନେଇ ତା ସ୍ୱାମୀ ପାଖରେ ଛାଡିବାକୁ ବାଧ୍ୟ କରେ । ବହୁକଷ୍ଟରେ ରବି କଥାରେ ରାଜିହୋଇ ଶ୍ୟାମଳି ତା ସହ ଯାଏ, ସେମାନେ ଯାଇ ଦାଣ୍ଡ ଦୁଆରେ ପାଦ ରଖନ୍ତେ ଶୁଭିଲା "ଦେଖିଲୁ ସେ କଣ କଲା ସେଦିନ ମୋତେ ଦୋଷ ଦେଉଥିଲୁ, ଆଜି ସେ ଗୋଟେ ବେଶ୍ୟା ବୋଲି ଜାଣିଲୁ ।" ଥିଲେ ସରପଞ୍ଚ ଆଉ ଏସବୁ କହୁଥିଲେ ସପନକୁ । ସପନ ମଧ୍ୟ କହୁଥାଏ ଠିକ୍ ଅଛି ଯିବ କୁଆଡେ ଏଇଠିକି ତ ଆସିବ, ଯାହା ପାଇଁ ଆପଣଙ୍କ ଭଳି ଭଗବାନଙ୍କୁ ହତାଦର କଲି ସେଇ ବେଶ୍ୟାକୁ ମୁଁ ଆପଣଙ୍କୁ ଆଗ ଭେଟିଦେବି । ବାହାରେ ରହି ସବୁ ଶୁଣୁଥାଏ ଶ୍ୟାମଳି । ମୁହଁରେ କ୍ରୋଧର ଭୀଷଣ ରୂପ ମାତ୍ର ରବିର ମୁହଁକୁ ସାମାନ୍ୟ ଚାହିଁ ଘରକୁ ଯିବାକୁ ଉଦ୍ୟତ ହୁଅନ୍ତେ ରବି ତା ହାତକୁ ଧରି ପକେଇ ତାକୁ ଯିବାକୁ ମନା କଲା । ମାତ୍ର ଶ୍ୟାମଳି ଦାଣ୍ଡରେ ପଡିଥିବା ଖଣ୍ଡିଏ ଧାରୁଆ ଅଧା ଖଣ୍ଡିଆ ପନିକିକୁ ଅଣ୍ଟାରେ ଧରି ଭିତରକୁ ଗଲା । ଭିତରେ ସପନ ଓ ସରପଞ୍ଚ ମଦ ନିଶାରେ ମାତାଲ । ସପନ ତା ହାତ ଧରି, "ନିଅନ୍ତୁ ବେଶ୍ୟା ଶ୍ୟାମଳି ଆଜି ରାତିକ ପାଇଁ ଆପଣଙ୍କର", ସରପଞ୍ଚ ସ୍ମିତହାତ୍ୟ ସହ ଆସି ଶ୍ୟାମଳି ହାତକୁ ଧରନ୍ତେ ଶ୍ୟାମଳି ସେଇ ପନିକି ଚୋଟରେ ନିଶାକ୍ତ ଦୁଇଟି ସଜୀବ ବ୍ୟକ୍ତିଙ୍କୁ ନିସ୍ତେଜ କରି ନିଜେ ରକ୍ତରେ ଗାଧୋଇ ସାରିଥାଏ । ରବି ଆସି ଶ୍ୟାମଳିକୁ ଜାବୋଡି ଧରି ତାର କ୍ରୋଧକୁ ଶାନ୍ତ କରୁ କରୁ ପୋଲିସ୍ ସାଇରନ୍ । ସକାଳର ସୂର୍ଯ୍ୟ ଆସିବା ଆଗରୁ ଶ୍ୟାମଳି ପୋଲିସ୍ ଗାଡିରେ ବସି ଥାନାରେ ପହଞ୍ଚିଲା । ହାତରେ ଧରିଥାଏ ସେଇ ଅଧାଖଣ୍ଡିଆ ରକ୍ତ ଜୁଡୁବୁଡୁ ପନିକି । ରବି ପଛେ ପଛେ ଯାଇ ପହଞ୍ଚିଲା ଥାନାରେ । ଆଉ ଶ୍ୟାମଳିକୁ କୋହଭରା କଣ୍ଠରେ ଖାଲି ଗୋଟିଏ ପ୍ରଶ୍ନ କଲା ।

ରବି : ତୁ କଣ କଲୁ ?

 

ଶ୍ୟାମଳି : ମୋ ଜୀବନର ଅଙ୍କ କଷୁ କଷୁ ସମାଧାନ ପାଇଗଲି ଏବେ ମୁଁ ମୁକ୍ତ । ଆମ ଗାଁର ସେଇ ଆଗଡକରା ଶ୍ୟାମଳି ଗାଁ ଲୋକଙ୍କ ମନରେ ସବୁଦିନ ଜୀବନ୍ତ ହୋଇ ରହିବ । ଗୋଟେ ସ୍ୱାମୀହନ୍ତା ନାରୀର ପରିଚୟ ନେଇ ।

ରବି : ହେଲେ ମୋ ମନରେ ?

ଶ୍ୟାମଳି : ତୁ ଏ ଶ୍ୟାମଳି ଜୀବନର ପ୍ରତ୍ୟକ୍ଷ ଦେବତା, ଯଦି ମୁକୁଳିଯାଏ ବଂଚିଥିବା ଯାଏ ତୋତେ ଦେବତା ଭାବି ପୂଜା କରିବି । ଆଉ ଯଦି ... ? । ।

ରବି ତା ପାଟିରେ ହାତ ଦେଇ ଭୋ ଭୋ ହୋଇ କାନ୍ଦିଉଠେ ।

ସେଇଦିନଠୁ ରବି ଶ୍ୟାମଳିର ମୁକୁଳିବା ପାଇଁ ଚେଷ୍ଟା କରି ଚାଲିଥିଲା । ଆଉ ଶୁଣିଲି ଶ୍ୟାମଳି ଆଜି କୁଆଡେ ନିର୍ଦ୍ଦୋଷରେ ଖଲାସ ହେଉଛି । ରବି ଆଉ ଶ୍ୟାମଳିର ସଂଯୋଗକୁ ଏ ସମାଜ କେଉଁ ନଜରରେ ଦେଖିବ, ତାହା ସମୟ କହିବ । ମୁଁ ଯାହା ଅନୁଭବ କଲି ତାହା ନିଶ୍ଚୟ ଯୁକ୍ତାତ୍ମକ ।

ଆଡଭୋକେଟ, ଭଦ୍ରକ
ମୋ. ୯୩୪୮୯୮୪୦୫୪
Email- rudrakanta456@gmail.com

 

# ଜୀବନ ମୃତ୍ୟୁ



ଶିବ ନାରାୟଣ ଦାଶ

ଏଇ ସେ ରଜନୀଗନ୍ଧା,
ଏଇ ସେହି ମଧୁଗନ୍ଧା,
ଏଇ ଉର୍ବଶୀ, ଏଇ ଯେ ମେନକା, ଏଇ ସ୍ୱର୍ଗର ରମ୍ଭା ।

ଏଇ ସେହି ମଧୁମତି,
ଏଇ ସେ ଛନ୍ଦବତୀ,
ମନ୍ଦ ମନ୍ଦ ଗନ୍ଧରେ ଭରେ ଏଇ ସେହି କେଶବତୀ ।

ଏଇ ସେ ହସୁଛି ଓଷ୍ଠ ଥରାଇ ଭୁବନମୋହିନୀ ରସେ,
ଏଇ ସେ ନାଚୁଛି ନୂପୁରର ତାଳେ ଅଭିସାରିକାର ବେଶେ ।
ଭ୍ରୁରୁ ଇଙ୍ଗିତେ ଗୁରୁ ସଙ୍ଗୀତେ ଡାକୁଛି ସେ ହାତ ଠାରି,
ଉଦ୍ଦାମ ତାର ଯୌବନ ନିଆଁ କାମନାରେ ହୁଏ ଘେରି ।
ଶୁଣାଏ ତାହାର ସ୍ୱପ୍ନର ଗୀତ ପ୍ରଣୟ ଶଙ୍ଖ ବାଇ,
ଏଇ ଯେ ଅମରା ପାରିଜାତ ଭରା ମନ୍ତ୍ର ସେ ଗାଇ ଗାଇ ।

ଅଦୂରେ ହସୁଛି ଗଗନ କମ୍ପାଇ ଉର୍ମି ସାଗର ବକ୍ଷେ,
ନିଭାଇଛି କେତେ ସୌଧ ସେ ତାର ଏହି ନିର୍ଜନ କକ୍ଷେ ।

ଉଠିଥିଲା ଏଠି ଦୁର୍ଗମ ଗିରି ଉନ୍ନତ କରି ଶିର,
ସିଞ୍ଚିଥିଲା ବି ଦୁର୍ଗ ପ୍ରାଚୀର ରୂପ ସୌରଭ ତାର ।

 

ଏହି ସୈକତେ ବହିଅଛି କେତେ ପ୍ରୀତି-ଗୀତି ପୟଃ-ଧାର,
ଏଇଠି ହଜିଛି ବିଧୁରା ପ୍ରିୟାର ଉନ୍ମତ୍ତମନା ସୁର ।

କାହିଁ ସେ ଲଳିତ ଛନ୍ଦ ?
ଉର୍ମି-ଝଞ୍ଜା ଅନ୍ଧ ଗହ୍ୱରେ ହଜିଛି ସେ ମଧୁଗନ୍ଧ ।
କାହିଁ ସେ ରଜନୀଗନ୍ଧା ?
ଜୀବନଦ୍ୟୁତିରେ ନଇଁଛି ତାହାର ମରଣାନ୍ତକ ସନ୍ଧ୍ୟା ।

ଶତ ଶଯ୍ୟାର ପ୍ରୀତି ପାର୍ବଣେ ହସୁଥିଲା ଯିଏ କାଲି,
ହଜାଇଛି ତାର ପ୍ରୀତି ହିଲ୍ଲୋଳ ମୃତ୍ୟୁର ଚୋରାବାଲି ।
ହଜିଛି ତାହାର କାଚ ରୁଣୁଝୁଣୁ ଗୀତ ଗୁଣୁଗୁଣୁ ଛନ୍ଦ,
ମୃତ୍ୟୁ ଦୁଆରେ ନେଇଛି କବର ମଦିରାମତ୍ତ ଗନ୍ଧ ।
ସେ ଯେ ଉର୍ମିର ଗୀତି,
ଆଜି ଯେ ହସୁଛି ଉର୍ବଶୀ ସାଜି ମୃତ୍ୟୁ ତାହାରେ କରେ ଆପଣାର
ଏଇ ଜୀବନର ଥିତି ।

ଏଇ ତ ଜୀବନ ଏଇ ବି ମୃତ୍ୟୁ ଏଇ ନଶ୍ୱର ସତ୍ତା,
ଏ ନୁହେଁ ସତ୍ୟ, ଶିବ-ସୁନ୍ଦର, ନୁହେଁ ଅମୃତ ପନ୍ଥା ।
ମେଘ ବିରଚିତ, ବାୟୁ ବିଧୁନିତ ଅବଗୁଣ୍ଠନ ତା'ର,
ଅନ୍ତରେ ଦେଖ ଭିତରଟା ଖାଲି କର୍ଦ୍ଦମଭରା ସାର ।

ଜୀବନ-ପାତ୍ର ଭରିଉଠୁ ତେଣୁ ଆସ୍ପୃହା ଆବାହନେ,
ଜନମୁଁ ଜନମେ ପଥ ଚାଲିବାରେ ଅମୃତ ସନ୍ଧାନେ ।

ଇମେଲ୍ : dasshibanarayan61@gmail.com, ଭ୍ରାମ୍ୟଭାଷୀ : ୯୯୯୯୦୨୪୬୫୬

 

# ମୃତ୍ୟୁ



ସ୍ୱର୍ଗତ ଶ୍ରୀ
ମାୟାଧର ଦାଶ

ହେ ମୃତ୍ୟୁ କରାଳ ! ତୁମେ ହୁଅ ପଛେ ଯେତେ ଭୟାବହ,
ନିରବ ଶୀତଳ ତୁମେ ସ୍ଥବିର ନିଶାର,
କେତେକେତେ ଜନମର ସୁପ୍ତିର ଗଭୀରେ
କାମନା ପୀଡିତ ଜୀବ ଥାଏ ନିମଗନ,
ତୁମେ ଆସି ସନ୍ତର୍ପଣେ ସ୍ପର୍ଶ କର ସୂକ୍ଷ୍ମ ମଗ୍ନଦେହ ।

ମହାଜାଗତିକ ପଥେ ଶାଶ୍ୱତର ଆନନ୍ଦ ସଂଧାନେ,
ଅନୁସରି ମୃତ୍ୟୁ ତୁମ ଆରୋହଣ ଅମୃତ ସୋପାନ,
ଜଡତାରୁ ଦିବ୍ୟଦେହେ ହେବ ତା'ର କ୍ରମ ବିବର୍ତ୍ତନ,
ଈଶ୍ୱର ଆସୀନତନୁ ଭବ୍ୟଲାଭ ତାଙ୍କରି ବିଧାନ ।

ମହାନିଦ୍ରା ! ମହୀୟାନ ତୁମେ ଭବ ଜୀବନର ପଥେ,
ଅତିକ୍ରମି ଚିର ସ୍ତବ୍ଧ ବିଘ୍ନ ବିକମ୍ପନ,
ଜୀବନପ୍ରବାହ ଧାଏଁ ଭେଟିବାକୁ ପ୍ରେମ ପାରାବାର,
ଆତ୍ମାର ଅନନ୍ତ ଉତ୍ସ ଜ୍ୟୋତିର୍ମୟ ତୁରୀୟ ଲପନ !

 

ଜନ୍ମର ନିକଟ ତୁମେ ହେ ମରଣ !

ଅମୃତର ପଥେ ନିଅ ବରି ଦେଇ ତୁମ ନିବିଡ଼ ଶରଣ,

କିନ୍ତୁ ହାୟ ! ତୁମେ ବହୁଦୂର ପୁନରପି ଜନମ ଲାଭର

ଭବ ଜଂଜାଳ ପିହିତ କର୍ମଫଳ ଜୀବ ଯେଣୁ କରଇ ବରଣ ।

ପ୍ରିୟ ହିତକାରୀ ମୋର ହେ ମୃତ୍ୟୁ ମହାନ !

ଶେଷ ହେଲା ଏବେ ମୋର ଏ ଜୀବନେ ଜନ୍ମର ତପସ୍ୟା,

ପଳିତ ଗଳିତ ଶୀର୍ଣ୍ଣ ଏ ଜଡ ଦେହର ଏବେ ହେଉ ଅବସାନ ।

ମରଣରହିତ ମୁକ୍ତ ଆତ୍ମା ମୋର ସତ୍ୟ ସନାତନ,

ଏ ଦେହ ବରଜି ଯିବ ନିତ୍ୟ ମହାନନ୍ଦମୟ ଭୂମା ଦରଶନେ;

କର ମୋତେ ପ୍ରିୟ ମୋର ବକ୍ଷଲଗ୍ନ ନିବିଡ଼େ ନୀରବେ,

ଏ ଜନମ ପାଇଁ ମୋତେ ବରିନିଅ ତବ

ଉର୍ଜସ୍ୱଳ ହିମ ଆଲିଙ୍ଗନେ ।

 

# ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି



ତାରା ପ୍ରସାଦ
ଜେନା

ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି
ମରଣ ପରେ ଆସୁଛ ଭାଙ୍ଗିବ ଚୁଡ଼ି
.....ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି..... ।୦ ।

ଲୁହକୁ ମୋର ଶୁଖେଇ ଭରିଛ କୋହ
ମୋହକୁ ଖାଲି ଥିଲା ମୋ କଙ୍କାଳ ଦେହ
ଆଞ୍ଜୁଳେ ଫୁଲ ପକେଇ ଦେଇଛ ତଡ଼ି
.....ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି..... ।୧ ।

ଆଖିକୁ ମନା କରିଛ ସପନ ନିଦ
ସ୍ମୃତିର ଚିଠି ଖୋଲିନ ଭାବର ଭେଦ
ସିନ୍ଦୂର ମିଛେ ପୋଛୁଛ ଆଙ୍ଗୁଠି ମାଡ଼ି
.....ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି..... ।୨ ।

ଝୁମୁରୁ ଝୁମୁ ପାଉଁଜି ଦେଇଛି କାନ
ବୁଝିନ ଭାବ ମଣିଷ କେତୁଟା ଦିନ

 

ଛାତିକୁ କରି ପଥର ଗଲି ମୁଁ ଏଡ଼ି

ଦେଖିଲା ଲୋକ କହିବେ, ଛାଡ଼ିଛି ନାଡ଼ି

.....ଜୀଇଲା ବେଳେ ଯାଇଛ ମୁହଁକୁ ମୋଡ଼ି..... ! ୩ !

ରାଜ ରଣପୁର, ଜିଲ୍ଲା-ନୟାଗଡ଼, ପିନ୍-୭୫୨୦୨୬

ଦୂରଭାଷ-୯୩୪୮୦୫୪୩୦୦

 

# ବସନ୍ତର ଆଗମନେ



ଅନନ୍ତ କୁମାର

ଫୁଲେଇ ଫଗୁଣ ଯେବେଠୁ ଆସିଛି
ପ୍ରକୃତି ହେଉଛି ଖାଲି ସଜ୍ଜ
ବସନ୍ତ ମଳୟ ଯେବେଠୁ ବହିଛି
ଧରାରୁ ଚାଲିଯାଇଛି ଶୀତ ।

ଆମ୍ର ବକଳର ମହକଟା ଆଜି
ସାରା ବନ ଉପବନେ ।
କୋଇଲିର କୁହୁ କୁହୁ ମିଠା ଗୀତି
ଶୁଣାଏ ସଭିଙ୍କ କର୍ଣ୍ଣେ ।

ଫୁଲେଇ ଫଗୁଣର ପହିଲି ସ୍ୱରଶେ
ବିମୋହିତ ତନୁ ମନ ଯୌବନ
ଦକ୍ଷିଣା ମଳୟର ଶୁଭ ଆଗମନେ
ସୁବାସିତ ସାରା ବନ କାନନ ।

ପଳାସ ଶିମିଳି ବଢାଏ କେତେ ଶୋଭାକାନ୍ତି
ଫଗୁଣର ପ୍ରାରମ୍ଭେ
ଚନ୍ଦନ ଆମ୍ର ଲତା ପୁଣି ଦିଏ ମହକାଇ
ବସନ୍ତର ସ୍ୱରଶେ ।

ତରୁଣ ତରୁଣୀ ମନେ ଭରେ ଉନ୍ମାଦନା
ବସନ୍ତର ମିଠା ମାରୁତ
ନବ ଯୌବନୀର ଦେହେ ଖେଳେ ଶିହରଣ
ପାଇ ଫଗୁଣର ସ୍ୱରଶ ।

କବି ହୁଏ କେତେ ଭାବ ବିଭୋର
ଫଗୁଣର ରଙ୍ଗ ଦେଖି
ନଦୀ ହୁଏ ପୁଣି ଚଳ ଚଞ୍ଚଳ
ବସନ୍ତର ବାଆ ଦେଖି ।

 

ଗାଁ ନଦୀ ପଠା ଦିଶେ ଶାଗୁଆ ଶାଗୁଆ
ଫଗୁଣର ରୂପକୁ ଚାହିଁ ।
ଭ୍ରମର ଗାଏ ଗୁଣୁ ଗୁଣୁ ମିଠା ଗୀତ
ପୁଷ୍ପରୁ ମିଠା ମଧୁ ଖାଇ ।

ବରଷକ ଥରେ ଆସିଛି ଶ୍ରେଷ୍ଠ ବସନ୍ତ
ମିଠା ମଳୟର ସାଥେ ।
ଫୁଲେଇ ଫଗୁଣକୁ  ଉପେଭାଗ କରରେ
ସର୍ବେ ଆନନ୍ଦ ଉଲ୍ଲାସେ  ।

କାର୍ଯ୍ୟକାରୀ ସମ୍ପାଦକ
ଜାତୀୟ କବି ଲେଖକ ସଂଗଠନ
ତିହିଡ଼ି, ଭଦ୍ରକ
ଯୋଗାଯୋଗ-୮୩୯୯୩୯୯୨୯

 

# ସପନ ଭାବନା



ଭବାନୀ ଶଙ୍କର ଦାଶ

ଆକାଶେ ଜହ୍ନ ସେଦିନ ଖୁବ ନିର୍ମଳ ,
ଖିଲି ଖିଲି ଦେଖାଯାଉଥିଲା
ତାର ସ୍ୱଚ୍ଛ ଆଲୋକ ମୋ ମନର,
ଆନ୍ତରିକ ଖୁସିକୁ ଜଣାଉଥିଲା ।

ପ୍ରେମର ସମକୋଣରେ ଯଉବନ,
ଖିଲି ଖିଲି ହୋଇ ହସୁଥିଲା
ମିଠା ନୂଆ ସମ୍ପର୍କର ଅନ୍ୱେଷଣରେ,
ମନ ଆକାଶେ ଘୁରି ବୁଲୁଥିଲା ।

ଗମ୍ଭୀରତାର ମନଲୋଭା ଚେହେରା,
ତାହାର ଅଲଗା ସବୁଠୁ ଲାଗୁଥିଲା
ମନରେ ଅନୁଭୂତିର ଏକ ଆଭାସ,
ଠକ ଠକ କରି ମୋତେ ସ୍ପର୍ଶ ହେଉଥିଲା ।

 

ମନର ଆବେଗରେ କେତେଯେ ସ୍ୱପ୍ନ,

ଅନ୍ଧାର ରାତିର ଅନିଦ୍ରାରେ ହଜିଯାଇଥିଲା

ଏଇ ଆଶ୍ୱାସନା ମନରେ ଥିଲା ଯେ ,

ତୁମେ ବୁଝିଗଲ ବୋଲି ହୃଦୟ ମୋ କହୁଥିଲା ।

ଆଜି ଆକାଶ ପୁଣି ଅନାଇବସି ,

ମୋତେ ଇଙ୍ଗିତରେ ହସି ହସି କହୁଥିଲା

କାହିଁକି ଦେଖୁଛୁ ପୁରୁଣା ସ୍ୱପ୍ନକୁ,

ଆଜି ପୁଣି ପ୍ରେମଚତୁର୍ଦ୍ଦଶୀ ଚାଲିଗଲା ।

(ପ୍ରେମଚତୁର୍ଦ୍ଦଶୀ-ଫେବ୍ରୁୟାରୀ ୧୪-ଭାଲେନଟାଇନ ଡେ)

ଠିକଣା-ଗୌରାଦେଇପୁର, କୋଦଳା, ଗଞ୍ଜାମ, ଓଡ଼ିଶା,

୭୬୧୦୩୨, ଭ୍ରାମ୍ୟଭାଷ : ୯୦୧୯୮୯୬୭୯୬

# ଫଗୁଣ ଆଇଛି ଫେରି



ପ୍ରକାଶ କୁମାର
ଚାନ୍ଦ

ବସନ୍ତ ଆସିଲା ବଉଳ ବାସିଲା
ଚଢେଇ ଗାଇଲେ ଗୀତ
ଗାଆଁ ଶେଷ ମୁଣ୍ଡେ ଅଗି ଜଳିଗଲା
ଧୀରେ ଟଳିଗଲା ଶୀତ ।।

ସୁଲୁ ସୁଲୁ ବହେ ମଳୟ ପବନ
ଦେହ ହୁଏ ଶିରି ଶିରି
ବରଷକେ ପରେ ଗାଆଁକୁ ଆମର
ଫଗୁଣ ଆଇଛି ଫେରି ।।

ଆମ୍ବ ପତରରେ ମହୁରୀ ଫୁଙ୍କଇ
କୋଇଲି ତୋଟାର ମାଳେ
ରୂପାଥାଳି ପରି ଜହ୍ନ ହସୁଥାଏ
ଫୁଲ ପକା ତାରା ମେଳେ ।।

ସୋରିଷ କ୍ଷେତରେ ଚିକିମିକି କରେ
ସକାଳର ସୁନା ଖରା
ରଙ୍ଗ ବେରଙ୍ଗର କେତେ ଫୁଲ ଫୁଟି
ସୁନ୍ଦର ଦିଶଇ ଧରା ।।

ଥୁଣ୍ଟା ଗଛ ସବୁ ନୂଆ ପତରରେ
ହସିଲେଣି ଖିଲି ଖିଲି
ବରଷକ ପରେ ରଙ୍ଗର ପରବ
ଆଗକୁ ଆସୁଛି ହୋଲି ।।

ଜୟପୁର ଶାସନ ପିପିଲି-ପୁରୀ
ମୋ-୯୮୫୩୩୫୪୯୩୮

 

# ଋତୁରାଜ ବସନ୍ତ



ନିକୁଞ୍ଜ କୁମାର ଘୋଷ

ଶ୍ରୀହୀନ ଧରିତ୍ରୀ ପୂର୍ଣ୍ଣତା ଆସଇ
ବସନ୍ତର ଆଗମନେ
ରୁକ୍ଷ ବୃକ୍ଷ ଲତା ନବୀନ ପଲ୍ଲବେ
ଋତୁରାଜ ଆବାହନେ ।।

ବରଷର ଅନ୍ତେ ଫାଲଗୁନ ଚୈତ୍ର
ଦୁଇ ମାସର ବସନ୍ତ
ସୌନ୍ଦର୍ଯ୍ୟ ତରଙ୍ଗେ ଭାସଇ ଧରଣୀ
ସନ୍ତାପ କରିଣ ଅନ୍ତ ।।

ମାଘ ଶୁକ୍ଳ ପକ୍ଷେ ବସନ୍ତ ପଞ୍ଚମୀ
ଆଣେ ମଳୟ ପବନ
ମଧୁମକ୍ଷି ଆଉ ଭ୍ରମରର ଗୀତ
ଏଠି ଅପୂର୍ବ ମିଳନ ।।

ନାନା ରଙ୍ଗେ ଫୁଲ ଜଗତ ଚହଟେ
କେତକୀ, ମାଳତୀ, ହେନା
ନବୀନ ଜୀବନେ ଏ ଧରା ହସଇ
ହୁଏ ଦେବୀ ଆରଧନା ।।

ପଲ୍ଲୀଦୃଶ୍ୟ ଦିଶେ ରସାଳୁ ଗହଳେ
ଶୁଭେ କୋଇଲି କୂଜନ
ଆସୁଛି ବସନ୍ତ କହୁଛି ମଳୟ
ହାରିନେବି ଜନମନ ।।

କଳା ଘନ ଦେହେ ରକ୍ତ ରଂଗ ଦିଶେ
ପଳାଶର ଫୁଲମାନ
ଫୁଟିଲା କମଳ ନୃତେ ଢଳ ଢଳ
ଜଗତକୁ ଏହା ଦାନ ।।

 

ନୂତନ ଉତ୍ସାହ ଉଦ୍ଦୀପନା ସାଥେ

ଚଞ୍ଚଳ ହୁଅଇ ମନୁ

ଋତୁ ମଧ୍ୟେ ଶ୍ରେଷ୍ଠ ବସନ୍ତେ ପବନ

ମଶ୍ଗୃଣ ଆସଇ ତନୁ ।।

ମଳୟ ପବନ ଥରେ ଛୁଇଁ ଗଲେ

କୁମର କୁଆଁରୀ ମନେ

ଉନ୍ମାଦନା ଭରେ ଦେହ,ମନ,ପ୍ରାଣେ

କୁହାକୁହି ହୁଅନ୍ତି କାନେ ।।

ନାନା ଜାତି ଫୁଲ ବାସ୍ନାର ମହକେ

ଉଛୁର ହୁଅଇ ମନ

ବୃକ୍ଷ ଡାଳେ ବସି ବିହଙ୍ଗ କହୁଛି

ବସନ୍ତର ଆଗମନ ।।

ସା-ମାଧବପୁର ,ପୋ-ଲକ୍ଷ୍ମଣନାଥ, ଥାନା-ଜଳେଶ୍ୱର,

ଜିଲ୍ଲା-ବାଲେଶ୍ୱର, ଓଡିଶା । ପିନ୍ : ୭୫୬୦୩୨ ମୋ: ୮୧୪୮୫୦୪୫

 

# ଆସୁଛି ଜାଗର



ପ୍ରଶାନ୍ତ କୁମାର ନାଥ

ହେଉଅଛି ସଜ୍ଜ ଶିବାଳୟ ସବୁ
ଜାଗର ଆସୁଛି ବୋଲି
ଦିବା ରାତ୍ର ଆଉ ପହଡ଼ ପଡୁନି
ଭକତ ଯାଆନ୍ତି ବୁଲି ।

ଚାଲରେ ସଙ୍ଗାତ ଚାଲ ଆରେ ମିତ
ମନ୍ଦିରକୁ ଯିବା ଆଜି
ହେଲାଣି ଗହଳି ଭକତରେ ପୂରି
କାଲି ଗଲେ ଯିବୁ ହଜି ।

ଶିବ ଲିଙ୍ଗ ପରେ ବେଲ ପତ୍ର ଥୋଇ
ଦୀପଟିଏ ଜାଳି ଦେବା
ଦେବଙ୍କର ଦେବ ସେହି ମହାଦେବ
ତାଙ୍କରି ଶରଣେ ଯିବା ।

ଅରଖ ଦୁଦୁରା ଫୁଲ ଚଢାଇବା
ମନରେ ଶରଧା ଭରି
ଭୋଳା ବାବା ଯେବେ ହୋଇବେ ପ୍ରସନ୍ନ
ମନସ୍କାମ ଯିବ ପୂରି ।

ସେହି ପରା ସତ୍ୟ ସେ ପରା ସୁନ୍ଦର
ସେହି ପରା ମହା ଯୋଗୀ
ମଶାଣିରେ ଶିବ ମନ୍ଦିରରେ ଶିବ
ସବୁ ପଥ ଥାଏ ଜଗି ।

 

ହୋଇଲେ କ୍ରୋଧିତ କରଇ ତାଣ୍ଡବ
ନଟରାଜ ରୂପ ଧରି
ହାତରେ ତ୍ରୀଶୂଳ ଅଣ୍ଟାରେ ଘାଗୁଡି
ଡମ୍ବୁରୁ ବଜାଇ କରି ।

ଉଜାଗର ରହି ଜାଗର ରାତିରେ
ଦେଖିବା ସେ ମହା ଦୀପ
ମଣିଷ ଜନମେ ମୁକତି ଲଭିବା
ମନରୁ ହାରିବା ପାପ ।

ଚାଲରେ ସଙ୍ଗାତ ନକରି ତୁ ଡେରି
ସଅଳ ଯିବା ବାହାରି
ଦୀପ ଜଳାଇବା ଶିବଙ୍କ ଆଗରେ
ଏକବାର ରାତି ଭରି ।।

(ଜୁଣଗଡି) ରାଜନଗର କେନ୍ଦ୍ରାପଡ଼ା ।

 

# ଶୁଭାଶିଷ ଦିଅ ତାହାଙ୍କୁ



ଶିଶିର କୁମାର ପଣ୍ଡା

ଝିଅଟେ ଆଣିଲି ଆଜିର ଦିନରେ
ବଡ଼ପୁଅ ବାହା ଦେଇକି
ସେଦିନୁ ରହିଛି ଆମରି ଘରେ ସେ
ସୁନାନାକୀ ବୋହୂ ହେଇକି ।

ବୋହୂବୋଲି ସିନା ଦୁନିଆଁ କହୁଛି
ଝିଅକିନ୍ତୁ ଅଟେ ଆମର
କୁଣ୍ଢେ ମୋଟ ଛାତି ହୋଇଯାଏ ମୋର
ସୁନାମ ଶୁଣି ତା' ନାମର ।

ପୁଅ ମୋ ଯେମିତି ବୋହୂବି ସେମିତି
କେହି ତ କଅମ ନୁହଁନ୍ତି
"ଭାରି କପାଳିଆ ମଣିଷ ଅଟୁ ତୁ"
ସାଙ୍ଗସାଥି ମତେ କୁହନ୍ତି ।

ସାତବର୍ଷ ମତେ କାଲିପରି ଲାଗେ
କେଜାଣି କେମିତି ଗଲାଣି
ଆମ ପରିବାର ସମସ୍ତଙ୍କୁ ସିଏ
ଅତି ଆପଣାର କଲାଣି ।

ଦୁହିଁଙ୍କ ଜୀବନ ସୁଖମୟ ହେଉ
ଶୁଭାଶିଷ ଦିଅ ତାହାଙ୍କୁ
ସାତ ଜନ୍ମପାଇଁ ହାତେ ହାତଛନ୍ଦି
କେହି ନ ଛାଡ଼ନ୍ତୁ କାହାକୁ ।

କୁଆଁସ , ମେରଦା କାଟିଆ , ଯାଜପୁର
ଆଳାପ:-୮୯୧୭୩୭୨୨୮

 

# ସମୟ ଖେଳୁଛି ଚକା ଭଉଁରି



ନୀଳମଣି ଚାନ୍ଦ

ସମୟ ଖେଳୁଛି ଚକାଭଉଁରିରେ
ମନକୁ ମଜେଇ ଦିଏ
ମନ ସିଲଟରେ କିଛି ଭଲ କଥା
ଆମ ପାଇଁ ଲେଖିଦିଏ ।

ଜୀବନଟା ଗୋଟେ ଉଠାପକା ଖେଳ
ଖେଳିବାକୁ ନିତି ହୁଏ
ହାର୍ ଜିତ୍ ତା'ର ପରିଣତି ସିନା
ଏ କଥାଟି ମିଛ ନୁହେଁ ।

ଘଟଣାରେ ଭରା ଇତିହାସ ତା'ର
କିଏରେ ପଢ଼ିବ ଆସ
ତୁମେ କରିପାର ପ୍ରଶଂସା ଅଳପ
ଅଥବା ଯେ  ପରିହାସ ।

ଜନମରୁ  ହୁଏ ଜୀବନ ଆରମ୍ଭ
ଜୁଇରେ  ହୁଅଇ ଶେଷ
ଜୀବନକୁ ବୁଝି ଜିଇଁବାକୁ ହୁଏ
ଆସ ଆସ ମିତ ଆସ ।

ସମୟ ଖେଳୁଛି ଚକା ଭଉଁରିରେ
ଖେଳୁଥିଲା ଖେଳୁଥାଉ
ଦୁନିଆ ମଞ୍ଚରେ ଅଭିନୟ ତା'ର
ସଭିଙ୍କ ମନକୁ ପାଉ ।

ଭୁବନେଶ୍ୱର,ମୋ:୯୫୮୩୨୦୨୩୫୭

 

# ପାପ ସମ୍ପର୍କ



ସିଦ୍ଧେଶ୍ୱର ତ୍ରିପାଠୀ

କେମିତି ମାପିବ ମୋ ଦେହ ଉଷ୍ମତା
କାହା କୁଳବଧୂ ହୋଇ
ମହାପାପୀ ବୋଲି ଦୁନିଆ କହିବ
ତୁମକୁ ଦେଲେ ମୁଁ ଛୁଇଁ ।

ଅତୀତର ତୁମ କୁଆଁରୀ ବୟସ
ଆଦ୍ୟ ଯଉବନ ଦେହ
ବାଡୁଅ ପାଣିରେ ଗାଧେଇଲା ପରେ
ବଦଳିଛି ପରିଚୟ ।

ଗହନ ରାତିରେ ଗହଣା ଉତାରି
ପାଖେ ପାରିବିନି ସୋଇ
କେମିତି ମାପିବ ମୋ ଦେହ ଉଷ୍ମତା
କାହା କୁଳବଧୂ ହୋଇ ।

ବିତାଇ ଦିଅଗୋ ଦିବସ ରଜନୀ
ତୁମରି ସିନ୍ଦୁର ସାଥେ
ଅଲାଜୁକି ବୋଲି ଦୁନିଆଁ କହିବ
ହାତ ରଖିଲେ ମୋ ହାତେ ।

ମୁହଁ ଫେରେଇ ତ କେବେଠୁ ଯାଇଛ
ହାତ ଠାରି ଡାକ କାହିଁ
କେମିତି ମାପିବ ମୋ ଦେହ ଉଷ୍ମତା
କାହା କୁଳବଧୂ ହୋଇ ।

କୁଣ୍ଡିଲୋ, କେରଙ୍ଗ, ଖୋର୍ଦ୍ଧା
୭୦୦୮୩୧୫୦୪୦

 

# ଜୀବନେ ଜହର



ପ୍ରଶନ୍ନ ପାତ୍ର

ଜୀବନ ଜାତକେ ଭରୁଛି ପାତକ
ଖାଦ୍ୟରେ ଜହର ଭରି
ଜୀଇବାଟା ବଡ଼ ବିଷମ ହେଲାଣି
ଅଦିନରେ ଯାଏ ସରି ।

ଏକରୁ ଆରେକ ଉଦ୍ୟୋଗ ବଢୁଛି
ମାଡୁଛି ଭେଜାଲ ବିଷ
ଖାଦ୍ୟରେଭେଜାଲ ମଦ୍ୟରେଭେଜାଲ
ଭେଜଲେ ଜୀବନ ଶେଷ

ବଦଳି ଗଲାଣି ଭୋକର ଭୂଗୋଳ
ସଂସ୍କୃତି ସଂସ୍କାର ସବୁ
ଦାମି ଦାମୀ ବିଷ ଲାଗଇ ପୀୟୁଷ
ପଥହୁଡ଼ା ଆମେ ସବୁ ।

ଜୀଇବା ଆଳରେ ନିଇତି ମରୁଛୁ
ବିଶ୍ୱାସ ଭରଷା ହେଜି
ବିଷର ବଳୟ କରଇ ପ୍ରଳୟ
ଜୀବନକୁ ଦେଖ ଆଜି ।

ତରାବୋଇ, ଖୋର୍ଦ୍ଧା

 

# ପରମାର୍ଥ



ବିନୟ କୁମାର ମିଶ୍ର

ନେବା ଦେବା ସବୁ
କଥାର ନିୟନ୍ତା
କର୍ତ୍ତା ଧାତା ଜଗନ୍ନାଥ,
ନେବାବେଳେ ନେବେ ଦେବାବେଳେ ଦେବେ ସେଇ ଏକା ସାମରଥ,
କାଳର କରାଳ ସ୍ରୋତ,
କାଳସର୍ପ ବୋଲି କବିଏ କହନ୍ତି ଗ୍ରାସ କରେ ପ୍ରାଣ ବାତ ।୧

ବେକରେ ଜୁଆଳି ବୋଝେଇ ଶଗଡ଼
ବାକୁଲି ଦେଇଛି ଖଞ୍ଜି,
ପଘାକୁ ବାନ୍ଧିଛି ମହଣ୍ତାରେ ନେଇ ତିଳେ ପାରିବନି ଘୁଞ୍ଚି,
ଉଠାଣି ଗଡାଣି ଦେଖି,
ଦଣ୍ତା ଧରିଅଛି ଅଣ୍ଟେଇ ଧରୁଛି ବେଳ କାଳକୁ ପରଖି ।୨

ଜରା ବ୍ୟାଧି ଶୋକ
ଜଡିତ ଜୀବନ
ପରୀକ୍ଷା ନିରୀକ୍ଷା ତାର,
ହୋଇଗଲେ ଶେଷ
ଫଳ ଦିଏ କଷି
ଜୀବନ କାହ୍ନରେ ମୋର,
ପଡୁ ପଡୁ ଯାଏ ଦିନ,

 

ରାତି ଆସିଯାଏ ଅନ୍ଧାର ଘୋଟଇ ମରି ମରି ଯାଏ ମନ ।୩

ଚୁନରା ସେବକ
ଅବା ଦେବଦାସୀ
ତା ଇଚ୍ଛାରେ ବନ୍ଧା ସବୁ,
କାହାକୁ ବସାଏ
ରାଜ ସିଂହାସନେ
ଫକୀରକୁ କରି ବାବୁ,
ରାଜାକୁ କରେ ଫକୀର,
ଘିଅ ପରି କ୍ଷୀର ଭିତରେ ଥାଇ ସେ କରିଥାଏ କାରବାର ।୪

ସବୁ ଜାଣେ ଶୁଣେ ନୀରବେ ବସିଛି
ବେଳ କାଳ ଦେଖି ଦେବ,
ଯେ କର୍ମ କରିଛ
ସେ ଫଳ ପାଇବ
ଭଲ ମନ୍ଦ ଅନୁଭବ,
ଜୀବନର ପରାଭବ,
ଦୁଃଖେ ନିନ୍ଦି ଭାଗ୍ୟ ଭଗବାନ ସୁଖେ ନିଜର ପ୍ରଭାବ ଭାବ ।୫

ଦୁଃଖ ବେଳେ ଡାକ
ସୁଖେ ପାଶୋରିବ
ଜୀବର ଚରିତ୍ର ଏହା,
ସମର୍ପଣ ବିନା

 

ଲବେ ନ ଘୁଞ୍ଚିବ
କାଳ ଚକ୍ର ଚଉବାହା,
ନାକରେ ପଶିଲେ ପାଣି,
ଆକତା ମାକତା ହେଲେ ଡାକ ତାକୁ ରକ୍ଷାକର ଚକ୍ରପାଣି ।୬

ଅଧା ସମର୍ପଣ
ଅଧା ଆକର୍ଷଣ
ମାୟା ପଟଳରେ ରହି,
ବନ୍ଧନ ଜଞ୍ଜାଳ
ମରୀଚିକା ଭୋଳ
ଜୀଵ କାଟି ପାରେ ନାହିଁ,
ସ୍ୱାର୍ଥରେ କି ପରମାର୍ଥ,
ବ୍ୟର୍ଥ ଅର୍ଥ ଭାବ ସଙ୍କଟ ପ୍ରଭାବ ଜୀବନର ଚଲା ପଥ ।୭

ମଲ୍ଲୀପୁର, ନିଆଳ, ଖୋର୍ଦ୍ଧା।

 

# ନିର୍ଜନ ବେଳା ସାଥୀ



ଆଶୁତୋଷ
ମେହେର

ନିର୍ଜନ ଏ ବେଳା ସାଥୀ କେହି ନାହିଁ
ଚଉପଟେ ମରୁବାଲି,
ପାଦ ଚିହ୍ନ ଦେଖି କେତେ ଯେ ଖୋଜିବି
କେମିତି ସେ ଗଲା ଭୁଲି..... । ।୦ । ।

ଚାଲି ଚାଲି ବାଲି ଅଥୟ କଲାଣି
ଅସ୍ଥିର ହେଲାଣି ପାଦ,
କିଏ ଜାଣି ଥିଲା ମନ ଭାଙ୍ଗିଗଲେ
ମିଳେ ଏତେ ପରମାଦ,
ସେଇ ପରମାଦେ ପ୍ରେମ ପ୍ରୀତି ମରେ
ହୃଦୟେ ଦହନ ବୋଳି...... । ।୧ । ।

ଟିକେ ଆଶ ବାନ୍ଧି ଖୋଜି ବୁଲିଥିଲି
ମରୁଦ୍ୟାନ ପାଣି ଝର,
ଶୋଷ ମେଣ୍ଟିଲାନି ଛାଇ ହଟିଗଲା
ନିଜ ଲୋକ ହେଲା ପର,
ଅଜଣା ରାହାରେ ଚାଲିଗଲା, କରି
ମନ ଗନ୍ତାଘର ଖାଲି..... । ।୨ । ।

୫୪, ଆର୍ଯ୍ୟପଲ୍ଲୀ, କିଟଛକ ପଟିଆ ଭୁବନେଶ୍ୱର, ୭୫୧୦୨୪
ଦୂରଭାଷ ୯୪୩୭୦୮୫୩୯୬

 

# ବାପା.. କୁଆଡ଼େ ବା ଯାଇଛ ତୁମେ ?



ଡ଼ଃ ମଧୁସ୍ମିତା ମିଶ୍ର

ସବୁ ତ ସେମିତି ଅଛି..

ତୁମ ଅବସ୍ଥିତି..

ତୁମ ହସ..

ତୁମ ରାଗ..

ତୁମ ଦୁମ ଦୁମ ଚାଲି..

ଖାଲି ତୁମ ମୁହଁ ଯାହା ଦିଶୁନି.. !

ଶରୀର ଖାଲି ଯାହା ଅନ୍ତର୍ଦ୍ଧାନ ହେଇଚି !

କିନ୍ତୁ କୁଆଡ଼େ ବା ଯିବ ?

ତୁମ ବାସ୍ନା..

ତୁମ ସିରାଳ ହାତର ସ୍ପର୍ଶ..

ତୁମ ମାନ ଅଭିମାନ..

ତୁମ ଶିଖାଇଥିବା କଥା

ଆଜି ବି ଶୁଭୁଚି ଆମ ପିଲାଙ୍କ ଦାରୋଟି କଥାରେ..

ତୁମ ପ୍ରତିଛବି

 

ଆଜି ଆମ ପିଲାଙ୍କ ଆଚାର, ବ୍ୟବହାରରେ..

ତୁମେ ଏବେ ବି ଅଛ ବାପା..

ଆମ ମନ ରେ, ଆମ ଚତୁର୍ପାସେ..

ଏଇ ମାଟି, ପବନରେ.

ଇମେଲ୍ : madhusmitaa@gmail.com

ଭ୍ରାମ୍ୟଭାଷ : ୯୫୯୦୯୪୭୮୪୮

 

# ଦିବାକର: ଜ୍ୱଳନର ଗନ୍ତାଘର



ଦିବାକର ନାୟକ

ଦୁନିଆ ଦେଖୁଛି ଦୂର ଆକାଶରେ
ଜଳୁଛି ମୁଁ ଦିବାକର
ନାୟକ ସାଜିବା ଯନ୍ତ୍ରଣା କେତେ
ବୁଝୁଛି ମୁଁ ଏଇ ଥର ।।

ଦୁନିଆ ଚକ୍ଷୁରେ ଏମିତି ସିନା ମୁଁ
ଦିବସେ ଜଳୁଛି ଖାଲି
ହେଲେ ମୁଁ ଜାଣେନା ସୃଷ୍ଟିରୁ ଏ ଯାଏ
ଶୀତଳତା ଅଛି ବୋଲି ।।

କବି ସିନା କହେ ମୋ ପାଇଁ କି ସତେ
ଅଛି ସରୋଜିନୀ ପ୍ରିୟା
କେହି ଦେଖିଛ କି ଦୁହିଁଙ୍କୁ ଏକାଠି
ଆମୋଦେ ମଗନ କାୟା ।।

ଆକାଶେ ଥାଇ ମୁଁ ଏତେ ଦୂରରୁ ବି
ଆଲୋକ ଓଜାଡ଼ି ଦିଏ
ସାରା ପୃଥିବୀଟା ମୋ ପାଇଁ ସମାନ
ପ୍ରିୟ ଅପ୍ରିୟ କେ ନୁହେଁ ।।

ପଦ୍ମିନୀ ନାମରେ ମିଛେ ମୋତେ ଯୋଡ଼ି
କାହାଣୀ ଲେଖୁଛ କିଆଁ
ମୋ ଭଲ ମନ୍ଦରେ ମୋ ଦୁଆରେ ଆସି
ହୋଇଛ କି କେବେ ଠିଆ ।।

ସାରା ଜୀବନ ତ ଏମିତି ଜଳୁଛି
ଜଳାଇବ ଆଉ କେତେ
ନିଆଁଠୁ ଏ ମିଛ କାହାଣୀର ତାତି
ନିଆଁଠୁ ଅଧିକ ମୋତେ ।।

କିଏ କହେ ରବି ଭାସ୍କର ସବିତା
କିଏ କହେ ପ୍ରଭାକର
ନିଦ୍ରା କୋଳେ ବିଶ୍ୱ ବିଶ୍ରାମ ନିଏ, ମୁଁ
ଯୁଗ ଯୁଗ ଉଜାଗର ।।

କାହା ଆଘାତରେ ଲବଣ ଢାଳନି
ମଲମ ନ ହେଲେ ନାହିଁ
ଆହା ପଦେ ଯଦି କହି ପାରିବନି
ନୀରବରେ ଯାଅ ରହି ।।

ସାରା ଜଗତର ମଙ୍ଗଳ ଲାଗି ମୁଁ
ଜାଣିଛି ଜନମ ମୋର
ଜଳୁଛି ଜଳିବି ଜ୍ୱଳନର ମୁଁଯେ
ଅସରନ୍ତି ଗନ୍ତାଘର ।।

ପାଟପୁର, କନିସି
ଗୋଲନ୍ଥରା, ଗଞ୍ଜାମ
ମୋ-୯୯୩୮୬୧୯୯୮୧

 

# ମାଁ



ମୋନାଲିସା ପାଣିଗ୍ରାହୀ

ମାଁ ପରି କିଏ ହେବରେ
ସେତ ଜଗତ ଜନନୀ ମାଁ ସମଲେଶ୍ୱରୀ
ହେଉ କି
ହେଉ ଜନମ ଦାୟିନୀ ମାଁ
ଏ ସଂସାରେ ମାଁ ର ସ୍ଥାନ ସବୁଠୁ ଉଚ୍ଚ ।

ମାଁ ଟି ମୋର ଅତି ନିଜର
ନ ଜାଣେ ସେ ଛନ୍ଦ କପଟ
ଜାଣେ ନାହିଁ ସେ ପର ଆପଣା
ତା ପାଇଁ
ଶିଶୁ ସବୁଠୁ ଆଗ, ସବୁଠୁ ପ୍ରିୟ ।

ମାଁ ର ସ୍ନେହ ଆଦର ସବୁଠୁ ବଡ଼
ସେତ ଦଶ ମାସ ନିଜ ଗର୍ଭରେ ଧରି
ଦିଏ ଜନମ କେତେ ଆଦରରେ
ମାଁ ଟି ମୋର ମମତାମୟୀ, ସ୍ନେହର ଭଣ୍ଡାରୀ

 

ମାଁ ପରି କିଏ ହେବରେ ।

ମାଁ ଟି ଆମର ତ୍ୟାଗର ଦେବୀ

ପ୍ରେମର ପୂଜାରିଣୀ

ମାଁ ପ୍ରେମରେ ନାହିଁ ଯେ ସ୍ୱାର୍ଥ , ନାହିଁ

ଶ୍ରୀ ରାଧାକୃଷ୍ଣ ଙ୍କ ପ୍ରେମରେ

ମାଁ ପରି କିଏ ହେବରେ ।

ନାହିଁ ମୋର କଲମ , ନାହିଁ ମୁଁ ସକ୍ଷମ

ମାଁ ଅକ୍ଷର ମୂଳ ଲେଖିବାକୁ

ମାଁ ର ଋଣ କିଏ ବା ସୁଝି ପାରେ

ମାଁ ତ ସଂସାର ପାଲିନି ଜଗତ ଜନନୀ

ତା ପରି କିଏ ହେବରେ , ମାଁ ! ମାଁ !

ଠିକଣା- ନନ୍ଦପଡ଼ା, ସମ୍ବଲପୁର

 

# ଅଜବ ଗୁଜବ



ନିରଞ୍ଜନ ସାହୁ

ଆମରି ଗାଆଁରେ ମୋହରି ନାଆଁରେ
କେତେ କଥା ଲୋକେ କହନ୍ତି
ସଜ ମାଉଁସରେ ପୋକ ପକାଇକି
ନ ଜାଣିବା ପରି ରହନ୍ତି ।

ନିଜର ଯେତେକ ଦୋଷ ଦୁର୍ବଳତା
କହିଲେ କାହାଣୀ ହେବ
କିଏ କାହିଁ କିମ୍ବା ନିଜର ଆଡ଼କୁ
ଆଙ୍ଗୁଠି ଉଠାଇ ଦେବ
ଗରିବ ମାଇପ ସଭିଙ୍କର ଶାଳି
ତାହାର ପରାଣ ଦହନ୍ତି ।

ନିଜ ପ୍ରତି ଯେବେ ପ୍ରଶ୍ନ ଉଠେ ତେବେ
ଅଲାଜୁକ ପରି ହୋଇ
ମନେ ବହି ରୋଷ ଆନେ ଦେଇ ଦୋଷ
କହନ୍ତି ଅନ୍ୟର ଖୋଇ
ପଥରଟେ ହୋଇ ରହିଯାଏ ମୁହିଁ
ନ ହେଲେ କେମିତି ସହନ୍ତି ?

ନିହଲ ପ୍ରସାଦ , ଗଁଦିଆ ପାଟଣା
ଢେଙ୍କାନାଳ – ୭୫୯୦୧୬
ମୋ :– ୯୯୩୮୭୪୧୫୮୩

 

# ହୋଲି



ସୁନନ୍ଦା ମହାନ୍ତି

ଫଗୁଣ ଆଣିଛି ଫଗୁ ଖେଳିବାକୁ ହୋଲି
ଫଗୁର ପସରା ସାଥେ ରାଧା କୃଷ୍ଣ ଝୁଲି
ବସନ୍ତ ସାଥେ ମଳୟ ହସେ ଖିଲି ଖିଲି
ଉଛୁଳେ ମନ ଯମୁନା ଦେଖିବାକୁ କାଲି
ପିକ ଗାଏ କୁହୁ କୁହୁ ପିଇକି ମହୁଲି
ବଉଳ ଫୁଲର ବାସେ ମନ ଯାଏ ଚହଲି
ବସନ୍ତ ଆସିଲ ଧରାରେ ସାତରଙ୍ଗୀ ହୋଲି
କହେ ଦରଦୀ ହୃଦୟ ଅଛି ତାର ବୋଲି
ସବୁ ଋତୁ ରଙ୍ଗ ନେଇ ବସନ୍ତ ଚିଠି ନାଲି
ଗୋଲାପୀ ରଙ୍ଗରେ ପ୍ରେମୀ ପିଅନ୍ତି ମହୁଲି
ସବୁଜ ପଣତ ଶାଢ଼ୀ ମାଆ ଧରିତ୍ରୀ ନହୁଲି
ବସନ୍ତ ଆଗମନେ କୋଇଲି ଦେଖାଏ ତା ଚାଲି
ରାଧା କୃଷ୍ଣ ଝୁଲନ୍ତି ଝୁଲାରେ ଦୋହଲି
ମଳୟ ଚାଲିରେ ଦେଖ ରଙ୍ଗ ମଖମଲ୍ଲୀ
ମଦମତ୍ତ ଚାଲିରେ ଋତୁ ସବୁ ଉଠନ୍ତି ଫୁଲି
ବାଘନିଶହନାଲା ସାତରଙ୍ଗୀ ସାତ ଋତୁ ବୋଲି
ପ୍ରେମ କହେ ଅଷ୍ଟରୁତୁ ଥିଲି ଅଛି ଥିବି
ଆସନ୍ତା କାଲି.

ସାକ୍ଷୀଗୋପାଳ, ପୁରୀ, ୯୦୪୦୯୭୭୩୨୭

 

# ହୋଲି



ପବିତ୍ରା ଧଳ
(ମଲ୍ଲିକ)

ମଧୁମଳୟର ମଧୁର ଶେଯରେ
ବସନ୍ତର ଆଗମନ,
ପରଭୃତ ତୋଳେ ମଧୁର ରାଗିଣୀ
ଝୁମେ ପ୍ରତି ତନୁମନ ।

ପ୍ରକୃତି ବିଭୋର ନବ ପଲ୍ଲବରେ
ଚୂତର ପହିଲି ଛୁଆଁ
କୁସୁମ ମାଧୁରୀ ବଢାଏ ଚାତୁରୀ
ବାସ୍ନାରେ ଭିଜେ ଦୁନିଆ ।

ଏ ମଧୁ ବେଳାରେ ମଧୁ ମଳୟରେ
ଦୋଳାୟିତ ମୂର୍ତ୍ତୀ ହୋଇ
ମଧୁର ଲଗନେ ଆସନ୍ତି ବିମାନେ
ରାଧାକୃଷ୍ଣ ମୂର୍ତ୍ତି ଦୁଇ ।

ପ୍ରୀତି ପଲ୍ଲବର ପୂରବୀ ରାଗିଣୀ
ହଜିଯାଏ ପ୍ରତି ମନ
ଦୀପଶିଖା ପୁଞ୍ଜେ ମିଞ୍ଜି ମିଞ୍ଜି ସଞ୍ଜେ
ହସନ୍ତି ରାଇମୋହନ ।

ଘଣ୍ଟା ମୃଦଙ୍ଗ ର ବିପୁଳ ତାନରେ
ଗାଁ ଦାଣ୍ଡ ଦୁଲୁକାଇ
ଚାଲନ୍ତି ହରସେ ପୁଲକିତ ମନେ
ରାଇ ଦାମୋଦର ଦୁଇ ।

ପୁଲକିତ ହୁଏ ପ୍ରତିଟି ପରାଣ
ଏ ଶୁଭ ମୂହୁର୍ତ୍ତ ପାଇଁ
ସଂସ୍କୃତି ସ୍ୱାକ୍ଷର ତତ୍ତ୍ୱଟା ଗଭୀର
ପୁରାଣର ଗାଥା ଏହି ।

 

ହିରଣ୍ୟକଶ୍ୟପ ହିରଣାକ୍ଷ ସୂର
ଭଉଣୀ ହୋଲିକା ପାଇଁ
ତ୍ରାହି ତ୍ରାହି ଏହି ମର୍ତ୍ତ୍ୟ ଡାକୁଥିଲା
ରକ୍ଷା କର ଭାବଗ୍ରାହୀ ।

ହିରଣ୍ୟକଶ୍ୟପ ହିରଣାକ୍ଷ ମାରି
ହୋଲିକା ଦହନ କରି
ହୋଲିକା ଶୋଣିତେ ହୋଲି ସେ ଖେଳିଲେ
ରକ୍ଷା ହେଲା ମର୍ତ୍ତ୍ୟ ପୁରୀ ।

ସଂହତି ସ୍ଥାପନ ଧର୍ମ ସଂସ୍ଥାପନ
ଭାଇଚାରା ପର୍ବ ଏହି
ସମଗ୍ର ଭାରତେ ହୁଅଇ ପାଳନ
ଶାନ୍ତି ମୈତ୍ରୀ ଗାଥା ଗାଇ ।

ଶାନ୍ତି ମୈତ୍ରୀ ଓ ସଂହତିର ପର୍ବ
ଭାଇଚାରା ସୃଷ୍ଟି କରେ
ପର ଆପଣାର ଭେଦଭାବ ଭୁଲି
ସଭିଙ୍କୁ ଏକାଠି କରେ ।

ଆଜି ବି ଜଳୁଛି ୟୁକ୍ରେନ ମାଟିରେ
ପ୍ରତିହିଂସା ଦାବାନଳ
ନିରୀହ ଜନତା ତୋପରେ ଜଳନ୍ତି
ସୁବିଧା ବାଦିଟି ମୂଳ ।

ସାମ୍ରାଜ୍ୟ ବାଦ ଓ ହିଂସା ଅହମିକା
ବିବେକକୁ ଦିଏ ମାରି
ମଣିଷ ରକତେ ମଣିଷର ଖେଳ
ହୃଦୟ ହୁଏ ଭିକାରୀ ।

ରଙ୍ଗର ଅବୀର ହୋଲିର ସ୍ୱାକ୍ଷର
ଧର୍ମ ସଂସ୍ଥାପନ ପାଇଁ
ଏହି ମହାଦିକ୍ଷା ଲଭୁ ଏହି ବିଶ୍ୱ
ମୈତ୍ରୀର ଗୀତ ଗାଇ ।

ପ୍ରଭୁତ୍ୱର ନୁହେଁ ପ୍ରେମ ଓ ଭ୍ରାତୃତ୍ୱ
ସଂହତି ର ଅର୍ଘ୍ୟ ନେଇ
ବିଶ୍ୱ ଭ୍ରାତୃତ୍ୱର ପ୍ରଗତି ପଥରେ
ଜଳାଇ ପାରିଲେ ରହି ।

 

ସେ ପୂଣ୍ୟ ଦାବାଗ୍ନି ହୋଇବ ପୂଣ୍ୟାଗ୍ନି
ଯଜ୍ଞ କୁଣ୍ଡ ରୂପ ନେବ
ସେହି ହୋମାନଳେ ବିଶ୍ୱର ଜନତା
ପ୍ରଗତି ଧୂମ୍ର ଉଠିବ ।

ପ୍ରାଚୀର ଅରୁଣ ବୁଣିବେ ଦିଧିଚି
ଦିଗବଳୟ ଯିବ ଛୁଇଁ
ଶାନ୍ତି ଓ  ମୈତ୍ରୀ ର ଉଡୁ ପୂଣ୍ୟ ଧ୍ୱଜା
ଭାରତର ବାର୍ତ୍ତା ଏହି ।

ଏ ହୋଲିର ପର୍ବ ଅବୀରର ରଙ୍ଗ
ଆଣୁନୂଆ ଅରୁଣିମା
ଶାନ୍ତିମୈତ୍ରୀ ଓ ସୌହାର୍ଦ୍ଦ୍ୟର ରଙ୍ଗେ
ବିଶ୍ୱ ପୂର୍ଣେନ୍ଦୁ ପୂର୍ଣ୍ଣିମା ।

ଚାନ୍ଦକୁଡା, ଚାନ୍ଦବାଲି ,ଭଦ୍ରକ
୯୦୯୦୬୩୬୬୦୧

 

# ମୁଁ ଏକା ବାଟଇ ମୋ ଚଲା ବାଟରେ



ପଙ୍କଜ କୁମାର ମଙ୍ଗଳ

ତ ଲୁହ ଯଦି ଅନ୍ୟକୁ ହସାଏ ସେ ଲୁହ ବି ଅମୃତ ସମ,
ଏକୁଟିଆ ରହି ଖୁସି ବାଣ୍ଟି ଚାଲ ପଛେ ମିଳୁ ଯେଉଁ ପରିଣାମ ।
ଜୀବନ ଚକ୍ର ସହଜ ନଥାଏ କେବେ ଆଶାରଖ ନାହିଁ କାହା ଠାରେ,
ଅଧିକାର ଯଦି ସାବ୍ୟସ୍ତ କରୁଛ ଅଛି ଦୂରତା ସେ ସମ୍ପର୍କରେ ।
ଏକା ଝୁଣ୍ଟୁ ଥାଓ, ଏକା ଉଠି ଚାଲ କେବେ ପାଣି ବଢ଼ାଅନି କାହା ଆଶାରେ,
ପଡ଼ିବା ଯନ୍ତ୍ରଣା ସହିବା ସହଜ କେବେ ସହି ପାରିବନି ଭରସା ଭାଙ୍ଗିବା ପରେ ।

ମୁଁ ଏକା ବାଟଇ ମୋ ଚଲା ବାଟରେ ଅଭିନୟ କରୁଥିବି,
ମୋ ବଳିଦାନରେ ଯଦି ଜଗତ ତିଷ୍ଠିବ ହସି ହସି ଦେଇ ଦେବି ।

ସରୁନି ସଂଳାପ ରହୁନି ସମୟ ଚାଲିଥାଏ ଅଭିନୟ,
କିଏ ସେ ବାଟଇ କହ ଝୁଣ୍ଟିନି ଚଲା ବଟେ ଝରିନି ଆଖିରୁ ଲୁହ ?
ଅନ୍ୟକୁ ଅପେକ୍ଷା କରନି କେବେ ଆସି ପୋଛି ଦେବ ତମ ଲୁହ,
ଯୋଡ଼ାଏ ହାତ ପରା ତମ ପାଖେ ଅଛି ସେ ହାତର ସାହାରା ନିଅ ।
ହରେଇବା ଭୟ କାହିଁକି କରୁଛ ଯିବୁ ଦିନେ ଏକା ହୋଇ,
ଜିତିବାକୁ ହେଲେ ଲଢ଼ିବାକୁ ହେବ ମନରେ ସାହସ ନେଇ ।

ମୁଁ ଏକା ବାଟଇ ମୋ ଚଲା ବାଟରେ ଅଭିନୟ କରୁଥିବି,
ମୋ ବଳିଦାନରେ ଯଦି ଜଗତ ତିଷ୍ଠିବ ହସି ହସି ଦେଇ ଦେବି ।

ବଡ଼ପାହି, ଭୋଗରାଇ, ବାଲେଶ୍ୱର, ଦୂରଭାଷ-୭୭୪୯୯୩୬୬୮୧

 

# ଦୁଇ



ସତ୍ୟନାରାୟଣ ମିଶ୍ର

ଦୁଇ ରାସ୍ତା ଯେବେ ଯୋଡ଼େ ନଈ କୂଳ
ସେତୁ ନାମେ ପରିଚୟ
ଦୁଇ ଟି ବାକ୍ୟକୁ ଯୋଡ଼େ ଯେ ଶବଦ
ଓ ଏବଂ ଟି ଅବ୍ୟୟ ।
ଯେଉଁ ଭାବ ଯୋଡ଼େ ଦୁଇଟି ମନକୁ
ନାଆଁ ଟି ସମ୍ପର୍କ ତାର
ଦୁଇ ଜୀବନ ଯେ ଯୋଡ଼େ ଆଜୀବନ
ମଙ୍ଗଳସୂତ୍ର ସିନ୍ଦୁର ।
ଯୁକ୍ତ ବିଯୁକ୍ତ ର ଦୁଇ ପାର୍ଶ୍ୱ ଯୋଡ଼େ
ପ୍ରବାହ ବିଜୁଳି ଶକ୍ତି
ଦୁଇ ପାପୁଲିକୁ ଯୋଡୁଥିବା ମୁଦ୍ରା
ନମସ୍କାର ନାମେ ଅଛି ।
ଦୁଇମାସ ଯୋଡ଼େ ଋତୁଟିଏ ସିନା
ଦୁଇ ରାସ୍ତା ଯୋଡ଼େ ଛକ
ଦୁଇଟି କୁଳର ହିତା ସେ ଦୁହିତା
ଦୁଇ ରନ୍ଧ୍ର ଏକ ନାକ ।

ବଲାଙ୍ଗୀର

 

# ଥରେ ଆସନ୍ତନି



ପୁଷ୍ପାଞ୍ଜଳି ପଣ୍ଡା

ତୁମକୁ ଏବେ ଡର ନାହିଁ
ମନ୍ଦିର ଭିତରୁ ବାହାରି ଆସିବାକୁ
ମନ ନାହିଁ ।
ସେଇ ଗମ୍ଭୀରା ଭିତରେ
ବସି ରହୁଛ
ଥରୁ ଟେ ଆସନ୍ତ ନି. ! !
ବାଇଗଣ କିଆରିରେ କଣ୍ଟା ଲଗେଇ
ପୀତାମ୍ବରୀ ପାଟ
ଚିରି ଦିଅନ୍ତନି .. !
ଭୋଗ ଥାଳି ପାଇଁ କରି କରିବିନି
ହାତରୁ ମୋ ଫଳ ନ ଖାଅ
ଜମା କହିବିନି
ନଡ଼ିଆ ପଛକେ ନ ନିଅ
ଖାଲି ଥରୁଟେ ଆସି
ଶାଗ ଭଜା ଟିକେ ଚାଖନ୍ତ ନି... !

ସୁଦାମା, ଗୋପିକା,
ଚାହିଁଲେ ବି ହୋଇ ପାରିବିନି ସତ ।
ଅଜାମିଳ ପରି ଡାକିପାରିବିନି ସତ ।
ଗଣିକା ପରାଏ
ଲୋଭ ମୋହ ଧରି
ପଡ଼ିଛି ଏଠି ମୁଁ ସଂସାର ଜାବୁଡ଼ି
ସୁଗତି ନହେଲା ନାହିଁ
ତୁମେ ଆସନ୍ତନି ଥରେ.. !
ଚର୍ମ ଆବରଣ ଖୋଲିବାକୁ
ଏ ଆତ୍ମା ଘଟେ ବିରାଜ ହେବାକୁ ।
ନିଃସଙ୍ଗ ନିଶବ୍ଦ ଏ ମୋର ଶରୀର
ଆର୍ତ୍ତ ସ୍ୱର ଥରେ ଶୁଣନ୍ତନି ।
ଗମ୍ଭୀରା ଭିତରେ କେମିତି ରହୁଛ କେଜାଣି !

କେନ୍ଦ୍ରାପଡ଼ା

 

# ହେ ମାନବ



ରାକେଶ ଭୋକ୍ତା

କରୁ କେତେ ଗର୍ବ ଅଂହାକାର ତୁହି
କାଠରେ ଜଳିବୁ ଦିନେ ,
କର୍ମ କୁ ଆଦରି ବଂଚିବା ଶିଖିଯା
କଷଣ ନ ଲଭି ମନେ ।

କାରିଗରୀ ସାଜି ଗଢିଯାଇ ଅଛୁ
କେତେ ଗୃହ କେତେ କୋଠା ,
କେତେ ରକମର କାମନା ଭିତରେ
କମୁନାହିଁ ଦେହ ବ୍ୟଥା ।

କୁହୁକିନୀ ମାୟା କୁହୁକ ବଳରେ
କାଣ୍ଡଜ୍ଞାନ ହରାଇଲୁ ,
କାମନା ବାସନା ରଂଗ ମଞ୍ଚରେ
କର୍ତ୍ତବ୍ୟ ତୋ ଭୁଲି ଗଲୁ ।

କମି କମି ଯାଏ ସତ୍ୟର ପଥ
କୋମଳ ହୃଦୟ ତନୁ ,
କିଶୋର ଦେହରେ ଯୁବ ସଂଚାରଣ
କିଛି କ୍ଷଣେ ହଜେ ମନୁ ।

କରୁଛି ବିନତି ହେ ଶେଷ୍ଠ ମାନବ
କ୍ରୋଧ, କୁଟ ନୀତି ତ୍ୟଜି ,
କୋଳାହଳ ପୂର୍ଣ୍ଣ ଜୀବନ ମୋଡ଼ରେ
କଳା ମୁରତି କୁ ଭଜି ।

ଦାମୋଦର ପୁର, ବୌଦ୍ଧ

 

# ଘୋର କଳିକାଳ



ଦୀପକ କୁମାର ନାଏକ

କଳିଯୁଗ ଜଗନ୍ନାଥ ହେ
ହୁଅ ହୁଅ ବାହାର
ଘୋର କଳିକାଳ ପାପୀଙ୍କୁ
ପ୍ରଭୁ କର ସଂହାର !!

ଅନ୍ୟାୟ ଅନୀତି ଦୁର୍ନୀତି
ହୁଏ ନାହିଁ ସମ୍ଭାଳି
ପାପୀର ପାପ ଯେ ଏଠାରେ
ସବୁ ଗଲାଣି ବଳି !!

ସତର କଥା ଯେ କହୁଛି
ବନ୍ଧା ହଉଛି ଏଠି
ମିଛ କୁ ସାହାରା କରିଣ
ସବୁ ଖାଆନ୍ତି ଲୁଟି !!

ଚୋର ଖସି ଯାଏ ବାବୁରେ
ସାଧୁ ହୁଏ ଦଣ୍ଡିତ
ନିୟନ୍ତ୍ରଣ କରିବା ଲୋକଟା
ଏଠି ହୁଏ କ୍ରୋଧିତ !!

ସୁରକ୍ଷା ଦେବା ର ବାବୁ ଟା
ପୁଣି ଅସୁର ସାଜେ
ବାଡ଼ ଯେ ଫସଲ ଖାଉଛି
କହିବି ମୁଁ କା ଆଗେ !!

ଯୁବ ସାମ୍ବାଦିକ, ଗ୍ରାମ-ଗଣ୍ଡାନାଳୀ ବ୍ଲକ୍-ହିନ୍ଦୋଳ
ଜିଲ୍ଲା-ଢେଙ୍କାନାଳ ପିନ୍-୭୫୯୦୨୧
ମୋବାଇଲ୍ -୮୬୩୭୨୬୧୮୨୮

 

# ଶବ୍ଦ ମାନେ ଆସନ୍ତି



ଝରଣା ବାରିକ

ଶବ୍ଦ ମାନେ ଆସନ୍ତି ନିରୋଳାରେ
ଛାଇ ଯାଆନ୍ତି
ସାଦା କାଗଜର ପ୍ରଚ୍ଛଦ ପଟରେ ।

ଶବ୍ଦ ମାନେ ଆସନ୍ତି ଭାବନାରେ
ଉଭେଇ ଯାଆନ୍ତି
କର୍ତ୍ତବ୍ୟ ର ଶୁନ୍ୟତା ପଥରେ

ଶବ୍ଦ ମାନେ ଆସନ୍ତି ପ୍ରତି ମୂହୁର୍ତ୍ତ ରେ
କେତେବେଳେ ରହି ଯାଆନ୍ତି
ପାଣ୍ଡୁଲିପି ହୋଇ ଖାତାରେ ବହିରେ ।

ଶବ୍ଦ ମାନେ ଆସନ୍ତି ଫୁଟୁଥିବା ପାଣି ପରି
ମନ ର ଅଙ୍କା ବଙ୍କା ରାସ୍ତାରେ
ଉଭେଇ ଯାଆନ୍ତି
ବାଷ୍ପ ପରି ଆକାଶ ବୁକୁରେ ।

ଶବ୍ଦ ମାନେ ଆସନ୍ତି ଅସରନ୍ତି ଭାଷା ନେଇ
ତାକୁ ସଜେଇ ଲେଖିଲେ
କେବେ କବିତା ତ
କେବେ ଗପ ହୋଇ
ରହି ଯାଆନ୍ତି
ପାଠକ ମାନଙ୍କ ହୃଦୟ ରେ ।

ସମଲ, ତାଳଚେର, ଅନୁଗୋଳ
ମୋବାଇଲ ::୯୫୫୬୮୪୬୯୩୨

 

# ଅମୃତାୟନ



ଜୟଶ୍ରୀ କାହାଳୀ

ଅବିଶ୍ରାନ୍ତ, ଅପଲକ, ଅଲୋଡ଼

ପ୍ରତିମା ଟିଏ ।

ଶାନ୍ତ, ସ୍ନିଗ୍ଧ ପ୍ରତିଛବି ନେଇ

ଦେବୀଟିଏ ପ୍ରାୟେ ଉଭା ପ୍ରକୃତି ।

ଋତୁ ପରେ ଋତୁ ଆସି ଚାଲିଯାଏ

ଦିବ୍ୟ ଅନୁଭବଟିଏ ନେଇ ସର୍ବଦା

ଧରାପୃଷ୍ଠେ ବାଣ୍ଟି

ଚାଲିଥାଏ ହର୍ଷୋଲ୍ଲାସ

ଗ୍ରୀଷ୍ମ ଆକାଶରେ

ତେଜୋଦୀପ୍ତ ରଶ୍ମିରେ

ଯେତେବେଳେ ଶୁଷ୍କ ହୁଏ ତାର ପୃଷ୍ଠଭୂମି

ସେତେବେଳେ ଫିକା ପଡିଯାଏ

ତାର ଚାହାଣୀ

ତଥାପି ଆକାଂକ୍ଷିତ ସେ

ଗଗନରେ ଭାସି ବୁଲୁଥିବା

ଅମ୍ବୁଦକୁ ଚାହିଁ ।

ପହିଲି ଆଷାଢ଼ର

ରିମ୍ ଝିମ୍ ଜଳବିନ୍ଦୁ

ଭିନି ଭିନି ସୁଗନ୍ଧର ଅନ୍ତରାଳେ

ପ୍ରକୃତି ପାଏ ସଂଜୀବନୀ

ସଞ୍ଚରି ଉଠେ ତା ପ୍ରାଣ ।

ଶ୍ରାବଣର ବାରିଧାରାରେ

ସବୁଜିମା ଭରା

ନବବଧୂ ବେଶ ସାଜେ ପ୍ରକୃତି ରାଣୀ ।

ବର୍ଷା ଆଉ ବୈଶାଖର ହାତଧରି

ଚାଲିଆସେ ଶରତ ସକାଳ ।

ଫଳ ପୁଷ୍ପେ ସୁଶୋଭିତ ବନ କାନନ

କାଶତଣ୍ଡୀ ଫୁଲ

ଆଢୁଆଳେ ଶସ୍ୟକ୍ଷେତ୍ର ।

ହିମ କାକର ବିନ୍ଦୁରେ

ପ୍ରକୃତି ସାଉଁଟି ନିଏ ଜୀବନର ସ୍ୱାଦ ।

ଶୀତ ଆଚ୍ଛାଦିତ ବସୁନ୍ଧରାରେ

ଗାଲିଚା ବିଛାଏ ପୁଷ୍ପର ସୁଗନ୍ଧ

ପାଚିଲା ଶସ୍ୟ ଗହଣେ

ପୂରି ଉଠେ ଭଣ୍ଡାର

ବସନ୍ତର ଆଗମନେ ମଳୟ ସ୍ପର୍ଶରେ

ପ୍ରକୃତି ସାଉଁଟି ନିଏ

ବଉଳର ମହକ ।

ସଭିଙ୍କ ହୃଦୟେ କରୁଣାମୟୀ

ତା ଆଶିଷ ଝରିପଡେ

ଜଗତର କଲ୍ୟାଣ ପାଇଁ

ସେଥିପାଇଁ ସଭିଙ୍କ ନମସ୍ୟ ପ୍ରକୃତି ।

ସା / ପୋ - ଦୁର୍ଲଗା, ଜିଲ୍ଲା - ଝାରସୁଗୁଡ଼ା

ପିନ୍ - ୭୬୮୨୦୪, ମୋ - ୭୮୪୯୦୯୫୭୨୪

 

# ମାତୃଭାଷା



ମଧୁସ୍ମିତା ସାହୁ

ଆଜିର ଦିନରେ ଓଡ଼ିଆ ଭାଷା ମୋ,
ଶାସ୍ତ୍ରୀୟ ମାନ୍ୟତା ପାଇଲା,
ଓଡ଼ିଆ ଆମର ପରିଚୟ ହୋଇ,
ସ୍ୱତନ୍ତ୍ର ରାଜ୍ୟ ହୋଇଲା ।।
ମାତୃଭାଷା ପାଇଁ ସବୁରି ହୃଦୟେ,
ସ୍ଥାନଟିଏ ଜନ୍ମାଇବା,
ଓଡ଼ିଆ ଭାଷାକୁ ଅଗ୍ରଗତି କରି,
ଖ୍ୟାତି ଅର୍ଜନ କରିବା ।।।
ମାଁ ପରି ପ୍ରିୟ ମଧୁର ମଧୁର,
ମାତୃଭାଷା ମନୋହର,
ଓଡ଼ିଆକୁ କାଳଜୟୀ ଉଦ୍ୟମରେ,
ହୁଏ ପ୍ରଚାର ପ୍ରସାର ।।
ମାତୃଭାଷା ମୋ କରେ ଆତ୍ମବିଭୋର,
ହୁଅଇ ସୃଜନଶୀଳ,
ଚାଟଶାଳୀ ବର୍ଣ୍ଣବୋଧ କରିଦିଏ,
ବ୍ୟାକରଣକୁ ସବଳ ।।

ଓଡ଼ିଆ ସାହିତ୍ୟ ଆମ ସ୍ୱାଭିମାନ,
ସଂସ୍କୃତି ଗୌରବ ହେବ,
କଳା ପରମ୍ପରା ଇତିହାସକୁ,
ଚିରନ୍ତନ ସ୍ଥାୟୀ ଦେବ ।।
ପୋଥି ପୁରାଣ ଭାଗବତ ଟୁଙ୍ଗୀ,
ବେଦ ଉପନିଷଦର,
ଉପନ୍ୟାସ ଗଳ୍ପ କବିତା ପ୍ରବନ୍ଧ,
ଶିଳାଲିପି ଗ୍ରନ୍ଥାଗାର ।।
ଉତ୍କଳ କେଶରୀ,ଗୌରବ, କୋଇଲି,
ଦେଇଛନ୍ତି ବଳିଦାନ,
ଓଡ଼ିଆ ସାହିତ୍ୟ ଯଶୋବନ୍ତ କରି,
ବଢାଇଛନ୍ତି ସମ୍ମାନ ।
ପୂର୍ବୁବ ଗୌରବ ପୂର୍ବୁବ ମହିମା,
ଫେରାଇ ଆମେ ଆଣିବା,
ଏକତ୍ର ଭାବରେ ଉନ୍ନତି କରାଇ,
ଅକ୍ଷୟ ଅମର ହେବା ।।

ବ୍ରହ୍ମା ନଗର ପ୍ରଥମ ଗଳି, ବ୍ରହ୍ମପୁର,
ଜିଲ୍ଲା-ଗଞ୍ଜାମ, ଓଡ଼ିଶା, ମୋ: ୯୩୪୯୨୮୫୪୧୬

 

# ବନ୍ଧୁ



ସନ୍ଦୀପ କର

ସୁଖେ ଦୁଃଖେ ଥାଏ  ବନ୍ଧୁ ଟିଏ ଭାଇ
ବିନୁ ମରିଚିକା ସମ
ବନ୍ଧୁ ହୋଇ ଯେବେ  କାର୍ଯ୍ୟରେ ନ ଆସ
ଧିକ୍ ବନ୍ଧୁପଣ ତୁମ ॥୧
ବନ୍ଧୁ ଯେବେ ତୁମେ  ଝୁଣ୍ଟିପଡିଗଲେ
ହାତକୁ ବଢାଇ ଦେବ
କଷ୍ଟରେ ପୀଡାରେ  ମାଡି ଆସି ଆଗ
ଆହାପଦେ କହୁଥିବ ॥୨
ରାଜ ଉଆସରେ  ଶ୍ମଶାନ ଭୁଇଁରେ
ଆଗରେ ବାହାରି ଯିବ
ପର ଦୁଃଖକୁ ସେ  ନିଜ ଦୁଃଖ ଭାବି
ସାହାସ ଟିକିଏ ଦେବ ॥୩
ଅଭାବ କାଳରେ  ସାହା ହେଉଥିବ
କଥା ପଦେ କହୁଥିବ
ଭଲରେ ମନ୍ଦରେ  ତୁମ ପାଖେ ପାଖେ
ଉପଦେଶ ଦେଉ ଥିବ ॥

ଭାଇ ପରି ସିଏ  ବିପତ୍ତି କାଳରେ
ପଛେପଛେ ଛିଡା ହେବ
ପୁନିଅଁ ପରବେ  ଯାନିଯାତର ରେ
ଘରେ ସେ ହାଜର ଥିବ ॥
ଖାଲି ବନ୍ଧୁର ଯେ  କର୍ତବ୍ୟ ସେ ନୁହେଁ
ତୁମ ଯତ୍ନ ନେଉଥିବ
ନିଜ ଆତ୍ତୁ ଭାଇ  ସମ ଆଚରଣେ
ହାତ ଟି ବଢାଇ ନେବ ॥
କୃଷ୍ଣ ସୁଦାମ କଂ  ଆଚାର ବିଚାର
ସଦା  ଭାଳି ହେଉଥିବ
ଯୁଗ ଯୁଗ ଧରି  ଅହିଂସା ନିତିରେ
ପ୍ରେମ ରସ ବାଣ୍ଟୁଥିବ ॥

ଶିକ୍ଷକ, ମାନପୁର, karsir1981@gmail.com

 

# ନାରୀର ଭୂମିକା



ଦେବାର୍ଚ୍ଚନ ମେହେର

ନାରୀ ରୂପ ଏକ ଭୂମିକା ଅନେକ...
ନାରୀ ତୁମେ ସନ୍ତାନର ମାଆ
ତ ପୁଣି କେବେ ବାପାର ଗେହ୍ଲେଇ ଝିଅ

ନାରୀ ରୂପ ଏକ ଭୂମିକା ଅନେକ...
କେବେ ପୁଣି ଭାଇର ଭଉଣୀ
ତ ପୁଣି କେବେ ସ୍ୱାମୀର ଧର୍ମପତ୍ନୀ

ନାରୀ ରୂପ ଏକ ଭୂମିକା ଅନେକ...
କେବେ ପୁଣି ପ୍ରେମିକର ପ୍ରେମିକା
ତ ପୁଣି କେବେ ବନ୍ଧୁର ଭଲ ବାନ୍ଧବୀ

ନାରୀ ରୂପ ଏକ ଭୂମିକା ଅନେକ...
ନାରୀ ତୁମେ ଜିଲ୍ଲାର ଜିଲ୍ଲାପାଳ
ତ ପୁଣି କେବେ ତୁମେ ପୋଲିସ୍

ନାରୀ ରୂପ ଏକ ଭୂମିକା ଅନେକ...
କେବେ ତୁମେ କୋର୍ଟ ର ବିଚାରପତି
ତ କେବେ ପୁଣି କୋର୍ଟ ର ଓକିଲ୍

ନାରୀ ରୂପ ଏକ ଭୂମିକା ଅନେକ...
କେବେ ତୁମେ ଅଫିସ୍ ର ଅଫିସର
ତ କେବେ ପୁଣି ଅଫିସ୍ ର ଚପରାସୀ

ନାରୀ ରୂପ ଏକ ଭୂମିକା ଅନେକ...
କେବେ ବିଦ୍ୟାଳୟର ତୁମେ ଶିକ୍ଷୟିତ୍ରୀ
ତ କେବେ ପୁଣି ମହାବିଦ୍ୟାଳୟର ଅଧ୍ୟାପିକା

 

ନାରୀ ରୂପ ଏକ ଭୂମିକା ଅନେକ...

କେବେ ହସ୍ପିଟାଲର ତୁମେ ଡକ୍ଟର

ତ ପୁଣି କେବେ ନର୍ସ

ନାରୀ ରୂପ ଏକ ଭୂମିକା ଅନେକ...

କେବେ ଉଡାଜାହାଜର ପାଇଲଟ୍

ତ କେବେ ପୁଣି ମଟର ଯାନର ଡ୍ରାଇଭର

ନାରୀ ରୂପ ଏକ ଭୂମିକା ଅନେକ...

କେବେ ତୁମେ ଘରର ମାଲିକାଣୀ

ତ କେବେ ପୁଣି ଚାକରାଣୀ

ନାରୀ ରୂପ ଏକ ଭୂମିକା ଅନେକ...

କେବେ ତୁମେ ବିଦ୍ୟାଳୟର ଛାତ୍ରୀ

ତ କେବେ ପୁଣି ଭାବନାର କବିୟତ୍ରି

ନାରୀ ରୂପ ଏକ ଭୂମିକା ଅନେକ...

କେବେ ତୁମେ ନର୍ତ୍ତକୀ

ତ କେବେ ପୁଣି ଗାୟିକା

ଗ୍ରାମ - ବାପୁଜୀନଗର, ଜିଲ୍ଲା - ବୌଦ୍ଧ

ମୋ - ୭୮୯୪୩୪୩୫୫୨

 

# ବସନ୍ତର କଡ଼ ଲେଉଟାଣି



ଦୀନବଂନ୍ଧୁ ବେଜ

ଅନେକ ଦିନ ପରେ ବତୁରି ଥିବା
ମନ ଆଜି କାତି ଛାଡିଛି ସାପ ପରି,
ନୈସର୍ଗିକ ସୌନ୍ଦର୍ଯ୍ୟ ସନ୍ଧାନରେ
ମଲା ଜହ୍ନ ଓ କ୍ଷତାକ୍ତ ହୃଦୟ
ଆଜି ହୋଇଛି ପୂର୍ଣ୍ଣ ସମର୍ପିତ
ଏକ ସାଧାରଣ ଯକ୍ଷୀଣି ପାଖରେ !

ଜୀବନ ସତ୍ତା ଶୂନଶାନ ବେଳେ
ଶ୍ମଶାନରେ ହେଉନି ଆତ୍ମାର ମିଳନ
ଘାଟୁଆଙ୍କ ସହ ହେଉଛି ତଲ୍ଲିନ,
ମିତ୍ରର ପ୍ରଗଳ୍ଭତାରେ
ସମୟକୁ ଦୋଷ ଦେଉଛି ବେତାଳ,
ରାଜା ବିକ୍ରମ ଏବେ ନିରବ ନିଶ୍ଚଳ
ପତ୍ର ପତିତ ହେବାର ଶବ୍ଦ
କରିଦେଉଛି ସଂସାରର ମୋହଭଙ୍ଗ ।

ଝିଂକାରୀର ଝିଂ ଝିଂ ଶବ୍ଦ ନିନାଦିତ
ସମୀରଣ ମଧ୍ୟ ହୋଇଛି ମୃଦୁ ମନ୍ଦ

ବସନ୍ତ ଆଗମନରେ ଫୁଲ,ଫଳ,ପତ୍ର
ରୂପମତୀ ପ୍ରକୃତୀ ରାଣୀ ଶ୍ରୀଙ୍ଗାରରେ
ସ୍ୱାଭାବିକ ଭାବରେ ମୁକକୁ କରିଛି
ପ୍ରକୃତି ପାଇଁ ଭିତରୁ ବାଚାଳ ।

ଢେରେ ବଢିଛି ସବୁଜ ରଙ୍ଗ ଗାଢ଼ତା
ଜଡ଼ ପରି ଭିତରକୁ ପ୍ରବେଶ ଥିବା
କାଠୁରୀଆ ମାନେ ଏବେ ସାୟାହ୍ନିତ
ବାଷ୍ପରୁଦ୍ଧ କୋକିଳ କଣ୍ଠ ନିନାଦିତ ।

ବାସ୍ନା ଶୂନ୍ୟ କିଆ, କେତକୀ ପଲ୍ଲବିତ
ଅଭିବାଦନ ଗ୍ରହଣ କରୁଛି କୁମ୍ଭାଟୁଆ
ସ୍ଥଗିତକୁ ରଦ୍ଧ କରି ମୟୂର ନୃତ୍ୟରତ
କାହିଁକିନା କଡ଼ ଲେଉଟେଇଛି ବସନ୍ତ ।

ସଂପାଦକ, ଲକ୍ଷ୍ମଣ ନାୟକ ସାହିତ୍ୟ ସଂସଦ
ମାଲକାନଗିରି, ଓଡ଼ିଶା
ସେଲ: -୭୭୮୦୯୦୨୨୧

 

# ଆଶାର ବର୍ତ୍ତିକା



ନୀଳମାଧବ କର

କି ଶବ୍ଦରେ ସଙ୍ଘୋଳିବି
ଶବ୍ଦ କଣ ସବୁ କହିପାରେ

ବରଂ ସମର୍ପି ଦେଉଛି ମୁଁ
ଚିର ସବୁଜିମା
ବିଛେଇ ଦେଉଛି ନବ କିଶଳୟ
ତମ ପାଦତଳେ

ସୂଚେଇବ ସିଏ
ହସଟିଏ ଝୁଲୁଥାଉ
ଅହର୍ନିଶ ତୁମରି ଓଠରେ
ସମୟକୁ ପଛ କରି
ତମେ ଚାଲୁଥାଅ

ଆଶାର ବର୍ତ୍ତିକା ଧରି
ସବୁ ମୁନି ମନୀଷୀଙ୍କ ଆଗେ
ତୁମ ସ୍ନେହ ପ୍ରେମ
ମମତାରେ ଭିଜି
ପୃଥିବୀ ବତୁରି ଉଠୁ
ଲୁଚିଯାଉ ହିଂସା ଦ୍ୱେଷ ଘୃଣା ଓ ଅସୂୟା
ଦୁଃଖ ଆଉ ଯନ୍ତ୍ରଣାର ଖାଲ ଢିପ
ପୃଥିବୀରୁ
ଜୀବନରୁ
କଳ୍ପନାରୁ

ଓଲଭରହାମ୍ପଟନ, ୟୁକେ
nmadhab@yahoo.com

 

# ସାମର୍ଥ୍ୟ



ଡଃ ମନୋରଞ୍ଜନ ବିଷୋୟୀ

ତୁମକୁ ବାନ୍ଧିବା ପାଇଁ
ସାମର୍ଥ୍ୟ ବା କାହିଁ ମୋର
ବାନ୍ଧିବି ବାନ୍ଧିବି ବୋଲି
ଯେତେ ଥର ଖୋଲିଛି
ମୋ ବାହୁର ବଳୟ
ସେତେ ଥର ନିଷ୍ଠୁର
ପରିହାସର ସ୍ୱରଟିଏ
ସଞ୍ଚରିଯାଏ
ଉଦ୍ୟତ ବାହୁର
ସବୁ ଉଦ୍ୟମ
ବ୍ୟର୍ଥ ହୋଇଯାଏ ।

ଏବେ କିନ୍ତୁ ଖୋଲିଛି
ମୋ ଶବ୍ଦର ରଜ୍ଜୁ ସବୁ
ଏ ଇଲାକା ଡେ଼ଇଁବା
ସାମର୍ଥ୍ୟ ବା କାହିଁ ତୁମର
ଏବେ ତୁମେ ବନ୍ଦ ମୋର
ଶବ୍ଦ ଇଲାକାରେ ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର
ମୋ: ୮୮୯୫୧୪୧୭୭୭

 

# କଳାଭୂମି



ସନ୍ଦୀପ୍ ଶେଖର
ଜେନା

ନିଷ୍ପ୍ରାଣ ପାଷାଣେ ଦେଇ ଜୀବନ୍ୟାସ
ଉତ୍କଳ ଗାରିମା କରିଛ ଅଙ୍କିତ ।
ପ୍ରବେଶ ପଥ ତୋ ଶୁଭାଶିଷେ ସିକ୍ତ
ଗ୍ରାମଦେବତୀଙ୍କ କରୁଣା ଜଳଦ ।
କାନ୍ଥରେ ତୋ ଅଙ୍କା କେତେ ରୂପରେଖ
ନବଗୁଞ୍ଜର ଓ କୃଷ୍ଣ କଥାମୃତ ।
କାହିଁ ବା ସଜ୍ଜିତ ନନ୍ଦିଘୋଷ ଚକ
ଅବା ଶୋଭା ପାଏ ଶ୍ରୀମନ୍ଦିର ନେତ ।
କେତେ କାଷ୍ଠ କେତେ ପାଷାଣ ପିତୁଳା
ଗାତ୍ରେ ଅଙ୍କିତ ରମ୍ୟ ଚିତ୍ରକଳା ।
କାହିଁ ବା ରେଶମ ପଶମର ହାଟ
ବୁଣାହୁଏ ଗୀତ ଗୋବିନ୍ଦର ପାଟ ।

ନୟନ ଅଟକେ ଲାଖ ପ୍ରତିରୂପେ
ମୃଣ୍ମୟୀ ପ୍ରତିମା କଳାକୃତି ଆଗେ ।
କେତେ କୁମ୍ଭକାର ହସ୍ତ ଦକ୍ଷତା
ପ୍ରମାଣ ତୁମଠି ହୋଇଛି ସାଇତା ।
ସୌନ୍ଦର୍ଯ୍ୟ କରଇ ଶତ ଗୁଣାନ୍ୱିତ
ଉତ୍କଳ ଅସ୍ମିତା ତବ ପଟ୍ଟଚିତ୍ର ।
ତାଳପତ୍ରେ ଖୋଦା ସୂକ୍ଷ୍ମ କାରୁକାର୍ଯ୍ୟ
ପରିଦର୍ଶକଙ୍କୁ କରାଏ ବିସ୍ମିତ ।
ଭାବନା ତରଙ୍ଗ ଆସଇ ମାନସେ
ପାଇକର ଖଣ୍ଡା ଦେଖି ତୋର ଗାତ୍ରେ ।
ଉଷ୍ମ ରୁଧିରେ ହୋଇଥିଲା ସିକ୍ତ
ବୀରପ୍ରସବିନୀ ତୋହର ଏ ବକ୍ଷ ।

 

କେତେ ପୁତ୍ର ତୋର ଦେଇ ବଳିଦାନ

ଅଖଣ୍ଡ ରଖିଲେ ତୋ ଗୌରବ ମାନ ।

ପ୍ରଣିପାତ ସେହି ଶିଳ୍ପୀଗଣ ପଦେ,

ବଞ୍ଚାଇ ରଖିଲ ଗୌରବ କୁ ଏତେ ।

ଶୋଣିତ ସମ ତବ ସ୍ୱେଦ ଝରାଇ

ଗଢିଛ ଏ ଭୂମି କେତେ କଷଣ ସହି ।

ଧନ୍ୟ କଳାଭୂମି ଧନ୍ୟ ମହିମା ତୋର

ଅଙ୍ଗେ ସାଇତିଛୁ କଳା ଉତ୍କଳ ଭୂମିର ।

କାଳେ କାଳେ ଅଖଣ୍ଡ ତୁ ଥିବୁ ମହୀତଳେ

ବୀରଦର୍ପେ ପ୍ରଚାରିବୁ ଗାରିମା ସକଳେ ।

ଓଡ଼ିଶା ବିତ୍ତୀୟ ସେବା (OFS)

ଭୁବନେଶ୍ୱର ।

 

# ବାପା



ପ୍ରହ୍ଲାଦ ସାହୁ

ବାପା ଅଟେ ଶବ୍ଦବ୍ରହ୍ମ ଉଚ୍ଚାରଣରେ
ସୃଷ୍ଟି ହୁଏ ଶବ୍ଦ ଝଙ୍କାର ।
ଗତ,ଆଗତ,ବର୍ତ୍ତମାନ ତ୍ରିକାଳଦର୍ଶୀ
ଅ, ଓ, ମ ପରି ଓଁକାର ।।

ସେ ଶବଦେ ଗୁଞ୍ଜରିତ ବ୍ରହ୍ମ ନାଦ
ତାଳୁରୁ ତଳିପା ହୁଏ ଶୁଦ୍ଧ ।
ଥରୁଟିଏ ଆତ୍ମୀୟତାରେ ଡାକିଲେ
ଆତ୍ମା ହୋଇଯାଏ ମନ୍ତ୍ରମୁଗ୍ଧ ।।

ବାପା ତୁମେ ମୋ ହିରୋ ମୋ ଅନ୍ତଃସ୍ୱର
ତୁମ ବିନା ସବୁ ଅସମ୍ଭବ ।
ତୁମେ ଜନ୍ମ ଦାତା ମୋ ସୃଷ୍ଟି ସମ୍ଭାର
ତୁମ ବିନା କି ମୋର ଉଦ୍ଭବ ।।

ବାପା ତୁମେ ମୋ ଘର ମୋ ପରିବାର
ତୁମେ ମୋର ଜୀବନ ସଳିତା
ତୁମ ବିନା ମୋର ବା କାହିଁ ଅସ୍ତିତ୍ୱ
ତୁମ ପାଇଁ ଅର୍ଜୁଛି ପ୍ରତିଷ୍ଠା ।।

ତୁମେ ସଖା ସହୋଦର ତୁମେ ପ୍ରୀୟା
ତୁମ ବିନା ଅସମ୍ପୂର୍ଣ୍ଣ କାୟା ।
ତୁମେ ସାଥୀ ତୁମେ ବନ୍ଧୁ ତୁମେ ଛାୟା
ତୁମ ବିନା ସବୁ ମୋହ ମାୟା ।।

ପାଠ୍ୟ ପୁସ୍ତକ ସମ୍ପାଦକ,
ଆକାଶ ଇନଷ୍ଟିଚ୍ୟୁଟ, ନିଉଦିଲ୍ଲୀ
- ୯୫୪୦୫୩୧୨୭୪

 

# ସର୍କସୀ ଜୀବନ



ଦଣ୍ଡାସି ପ୍ରଧାନ

ଜୀବନ ଅଟଇ ସର୍କସ ସମାନ
ଖେଳିବାକୁ ହୁଏ ଖେଳ ।
ଖେଳି ନ ଜାଣିଲେ ହାସ୍ୟ, ତାଳି, ରୋଳେ
ଅସନ୍ତୋଷ ହଟ୍ଟଗୋଳ । ।
ଇଚ୍ଛା ଅନିଚ୍ଛାର ମନ କଥା କା'ର
କିଏ ଶୁଣିବାକୁ ଅଛି ।
ବାଦ୍ୟ, ତାଳ, ଲୟ ବେସୁରା ଘଟିଲେ
ସରିଯାଏ ସବୁକିଛି ।।
ମାଲିକ, ମୁନିବ, ମାଷ୍ଟର, ଦର୍ଶକ
ଏକରୁ ଆନେକ ଆନ ।
କା' ଆଗେ କହିଲେ କିଏ ବା ଶୁଣିବ
ନବ୍ୟ ଛଟା ଆନୁ ଆନ ।।
ସଜାଇ ଚରିତ୍ର ଅଭିନୟ ମଞ୍ଚେ
ବୋଲିବାକୁ ହୁଏ ରଙ୍ଗ ।
ଅନ୍ଧାର ସଙ୍ଗମେ ଆଲୁଅ ସଜ୍ଜାରେ
କଳା କଉଶଳେ ଅଙ୍ଗ ।।

ସଙ୍ଗୀତ ମୂର୍ଚ୍ଛନା ବିବିଧ ଯନ୍ତ୍ରରେ
ସୁଆହ୍ଲାଦିତ ହୃଦୟ ।
ହୁଏ ପ୍ରଶମିତ ମାନସ ଯନ୍ତ୍ରଣା
ଜୀବନ ଆନନ୍ଦମୟ ।।
କଠୋର ଜଗତ କଣ୍ଟକିତ ପଥ
ଥୋଇବାକୁ ହୁଏ ପାଦ ।
ଝୁଣ୍ଟି ପଡି ଉଠି ଧାଇଁ ଜାଣିଲେ ହିଁ
ମନରୁ ହଟେ ବିଷାଦ । ।
ଅଢେଇ ଘଣ୍ଟାର ସରିଯାଏ ଖେଳ
ବହାବା କିଏ ନଦେଉ ।
ଜଣେ ହେଲେ ହେଉ ଦୁର୍ଲଭ ଦର୍ଶକ
ସୁମନେ ସାଇତି ଥାଉ ।।

ସାହିତ୍ୟ ସମ୍ପାଦକ,
ଉପାନ୍ତ ସାହିତ୍ୟ ସଂସ୍କୃତିକ ସେବା ସଂସଦ,
ପାତ୍ରପୁର, ଗଞ୍ଜାମ , ଭ୍ରାମ୍ୟଭାଷ: ୮୭୬୦୯୯୪୯୭୭

 

# ଜୀବନର ମୂଲ୍ୟ



ଅମୃତନାରାୟଣ ଶତପଥୀ

ଜୀବନର ମୂଲ୍ୟ କ'ଣ କିଛି ଏବେ ନାହିଁ ?

ତେବେ ହତ୍ୟା ଆତ୍ମହତ୍ୟା କୁହ କାହିଁ ପାଇଁ ।(୧)

ଖବର କାଗଜ ପୃଷ୍ଠା ରକ୍ତରେ ରଞ୍ଜିତ,

ହତ୍ୟା, ମୃତ୍ୟୁ ଅପମୃତ୍ୟୁ ଖବରେ ପୂରି ତ ।(୨)

ଏପରି କାହିଁ ଗୋଟିଏ ନାହିଁ ଆହେ ଦିନ,

ନ ଥିବ ମୃତ୍ୟୁ ଖବର ଚୋରି କି ଲୁଣ୍ଠନ ।(୩)

ଈଶ୍ୱରଙ୍କ ସୃଷ୍ଟି ଏହି ମାନବ ଜୀବନ,

କୁକର୍ମେ ପୂରି ଗଲାଣି ପୁଣି ରାତି ଦିନ ।(୪)

ସତର୍କ, ସୁରକ୍ଷିତ ସତ୍ କର୍ମୀ ହୁଅ,

ଜୀବନ ମଧୁରତାର ଆନନ୍ଦ ଉଠାଅ ।(୫)

ପଶୁ ଠାରୁ ତୁଚ୍ଛ କାର୍ଯ୍ୟ କର ନାହିଁ କେହି,

ସଂସାରରେ ବଞ୍ଚ ଆହେ ବଞ୍ଚି ଓ ବଞ୍ଚାଇ ।(୬)

ସୁନ୍ଦର ପୃଥିବୀ ଏହି ସ୍ୱର୍ଗୁ ଶ୍ରେଷ୍ଠ ଧରା,

ବିତରି ଦିଅ ଏଠାରେ ସୁଖର ପସରା ।(୭)

କର ନାହିଁ ଜୀବନକୁ ଅଛଟକେ ନଷ୍ଟ,

ମାନବ ଜୀବନେ ଆଉ ପାଅ ନାହିଁ କଷ୍ଟ ।(୮)

 

ସଂସାରେ ଘର କରିଲେ ପଥରକୁ ସହି,

ପତର ପରି ତୁ ମନ ହୋଇ ଯାଉ କାହିଁ ।(୯)

ସଂସାରେ ଅମୃତ ଖୋଜି କର ତା'ର ପାନ,

ଜୀବନ ହୋଇ ଅମୂଲ୍ୟ ହେବ ଜୟ ଗାନ ।(୧୦)

ନୟାପଲ୍ଲୀ, ଜୟଦେବ ବିହାର, ଭୁବନେଶ୍ୱର ।

 

# କହଇ ମନ ଆରେ ମୋ ବୋଲ କର



ବାସନ୍ତୀ ଲତା ଜେନା

କହଇ ମନ ଆରେ ମୋ ବୋଲ କର
ସତ୍ୟ ଧର୍ମ ପଥେ ରହି କାର୍ଯ୍ୟକୁ କର ॥

ବିବେକ ସ୍ଥିର ପରା ମନ ତ ଚଞ୍ଚଳ
ବିବେକର ଆଦେଶ ତ ସ୍ୱଚ୍ଛ ଗଙ୍ଗା ଜଳ ॥

ଦୁଃଖି ରଙ୍କି ଜନ ପ୍ରତି ଉଦାର ଭାବ
ଦାନ ଧର୍ମ କରୁଥିବ କୁଣ୍ଠିତ ନ ହେବ ॥

କରୁଣା ଦୟା କ୍ଷମା ସଦା ଆଚରିବ
ଉତଫୁଲ୍ଲିତ ମନେ ତାଙ୍କ ସେବା କରୁ ଥିବ ॥

ଲୋଭ ମୋହ କପଟ ହିଂସା ଈର୍ଷା ଭାବ
ସଂଯମ ଗୁଣରେ ତାକୁ ଦମନ କରିବ ॥

ସୁଜନ ନଜଙ୍କ ସଙ୍ଗେ ଭାବ ରଖିଥିବ
ନିରିଦୟ ହୋଇ ତୁମେ କ୍ରୁର ନ ହୋଇବ ॥

 

ଅନ୍ୟାୟ ଅନୀତି ପରା ଅଧର୍ମର ଫାସ
ପରିତ୍ୟାଗ କଲେ ବାବୁ ପାଇବ ସନ୍ତୋଷ ॥

ଦୁର୍ବଳ ଉପରେ କେବେ ଦାଉ ନ ସାଜିବ
ସ୍ୱାର୍ଥ ପର ହୋଇ ଧନ ଠୁଳ ନ କରିବ ॥

କର୍ମ କରି ଯାଅ ମନ ଧର୍ମ ରକ୍ଷା ପାଇଁ
ଅହଂଙ୍କାର ଗରବକୁ ସମାଧି ଦିଅଇ ॥

ଅହଂଙ୍କାର ଗୁଣ ପରା ସର୍ବ ନାଶ କରେ
ଯଶ ଖ୍ୟାତି ସମ୍ମାନକୁ ଧୂଳି ସାତ କରେ ॥

ଦିନ ରାତି ତୁଣ୍ଡେ ଧର ପ୍ରଭୁଙ୍କର ନାମ
ରାମ ନାମ ସତ୍ୟ ପୁଣି କରୁ ଥାଅ କାମ ॥

ଭଜ ମନ ହରେକୃଷ୍ଣ ପ୍ରଭୁ ନାରାୟଣ
ଶ୍ରୀପୟରେ ଲୟ ଥିଲେ ଜୀବନ ତ ଧନ୍ୟ ॥

ଆସିଅଛୁ ଏକା ତୁହି ଯିବୁ ଶୂନ୍ୟ ହୋଇ
ନ ଯିବେ ସାଥିରେ କେହି ତୋର ବନ୍ଧୁ ଭାଇ ॥

 

ବିଶ୍ୱାସ ଭରସା ସାହା ଏକା ଭଗବାନ
ମନ ହୃଦୟରେ ଭଜ ଶ୍ରୀରଘୁ ନନ୍ଦନ ॥

ମୁକତିର ପଥ ସେହି ନାମ ତ ଶ୍ରୀହରି
ସେହି ନାମ ଜପି ମନ ଭବୁ ହେବୁ ପାରି ॥

ଗାନ୍ଧୀନଗର, ପୋଷ୍ଟ / ଜିଲ୍ଲା : ନବରଙ୍ଗପୁର

 

# କପିଧ୍ୱଜ ହେଲା ନାମ



ନରେନ୍ଦ୍ର ପ୍ରସାଦ
ବେହେରା

ଅର୍ଜୁନ ରଥର ସାରଥୀ ଶ୍ରୀକୃଷ୍ଣ
ଏକଥା ସମସ୍ତେ ଜାଣ
ସେହି ରଥ ନାମ ହେଲା କପିଧ୍ୱଜ
କହୁଛି ବୁଝାଇ ଶୁଣ ।୧ ।

ପାଣ୍ଡବ ମାନଙ୍କ ବନବାସ କାଳେ
ଭୀମ ବୁଲୁଥିଲେ ବନେ
ବିରାଟ ହନୁକୁ ଦେଖିଣ ରାସ୍ତାରେ
ଭାବିହେଲେ ମନେମନେ ।୨ ।

ଲାଞ୍ଜକୁ ତାହାର ଲମ୍ୱାଇ ଦେଇଛି
ରାସ୍ତାର ଉପରେ ଜାଣ
ପଥରକୁ ପୁଣି ଆଉଜି ବସିଛି
ଆଖିକୁ ବୁଜିଛି ପୁଣ ।୩ ।

ପଚାରିଲେ ଭୀମ ଆହେ ହନୁମନ୍ତ
ଜଗିଛୁ ଏଠି କାହାକୁ
ପଥ ରୁଦ୍ଧ କରି କାହିଁକି ବସିଛୁ
ଯିବାକୁ ଦିଅ ଆଗକୁ ।୪ ।

ହଟାଇଣ ନିଅ ପୁଚ୍ଛକୁ ତୁମର
ଆଗକୁ ଯିବାର ଅଛି
ତ୍ରେତା ଯୁଗରେ ମୁଁ ଯୁଦ୍ଧ କରିକରି
ବିଶ୍ରାମ ଏଠି ନେଉଛି ।୫ ।

ଯିବା ପାଇଁ ଯଦି ଇଚ୍ଛା ଅଛି ତୁମ
ହଟାଇ ଦିଅ ପୁଚ୍ଛକୁ
ବଡ଼ କ୍ଳାନ୍ତ ହୋଇ ବିଶ୍ରାମ ନେଉଛି
ଘାରିଛି ନିଦ ଆଖିକୁ ।୬ ।

 

ଶତ ଚେଷ୍ଟା କରି    ପାରିଲାନି ଭୀମ
ରାସ୍ତାରୁ ପୁଚ୍ଛ ହଟାଇ
ଖଟାଇଲା ଶକ୍ତି    ଅଶୀ ହାତୀଙ୍କର
ପାରିଲା ନାହିଁ ଘୁଞ୍ଚାଇ   ।୭ ।

ନତଶିର ହୋଇ   ହାତଯୋଡି ଭୀମ
କହିଲା ହନୁମନ୍ତକୁ
କିଏ ତୁମେ ପ୍ରଭୁ    ପରିଚୟ ଦିଅ
ଦୂରକର ସଂଶୟକୁ   ।୮ ।

ନାମ ଅଟେ ମୋର    ହନୁମନ୍ତ ଜାଣ
ରାମଙ୍କ ପରମ ଭକ୍ତ
ଶକ୍ତିରେ ଭୀମଙ୍କ    ବଡ଼ ଭାଇ ମୁହିଁ
ସମସ୍ତଙ୍କୁ କରେ ମୁକ୍ତ   ।୯ ।

ପାଣ୍ଡବଙ୍କ ଠାରୁ    ଶୁଣି ବନବାସ
କହିଲା ମଙ୍ଗ ଧରିବି
ଆଗାମୀ ଯୁଦ୍ଧରେ    ଅର୍ଜୁନ ରଥରେ
ଧ୍ୱଜାରେ ରହିଣ ଥିବି   ।୧୦ ।

ମୋହର ହୁଙ୍କାରେ    ଶତ୍ରୁପକ୍ଷ ସୈନ୍ୟ
ହୀନବଳ ହୋଇ ଯିବ
ଉପସ୍ଥିତି ମୋର    ଚାରି ଯୁଗରେ ଯେ
ଏକଥା ମନେ ରଖିବ   ।୧୧ ।

ଏହାକହି ହନୁ    ପୁଚ୍ଛକୁ ହଟାଇ
ରାସ୍ତାକୁ ଫାଙ୍କା କରିଲେ
ଦେଇଣ ଭୀମକୁ    ଆଶୀର୍ବାଦ ହନୁ
ଅନ୍ତର୍ଦ୍ଧାନ ହୋଇଗଲେ   ।୧୨ ।

ସେଥିପାଇଁ ଆଜି    ଅର୍ଜୁନଙ୍କ ରଥ
କପିଧ୍ୱଜ ହେଲା ନାମ
ମହାଭାରତରୁ    କୌତୁହଳ କଥା
ବଖାଣ କଲା ଅଧମ   । ।୧୩ । ।

କବିକମଳ ନରେନ୍ଦ୍ର ପ୍ରସାଦ ବେହେରା,
ସମ୍ପାଦକ - ମୋ ଅନୁଷ୍ଠାନ,
ଆଳଦା, ଖଇରା, ବାଲେଶ୍ୱର,
ମୋ- ୯୮୫୩୧୦୪୨୫୧୦

 

# ଲକ୍ଷ୍ମୀ ପୁରାନ୍



ସତ୍ୟ ନାରାୟଣ ମିଶ୍ର

କୋଶଲି/ସମ୍ବଲପୁରୀ – ଲକ୍ଷ୍ମୀ ପୁରାନ୍

ବିଶ୍ୱରୂପସ୍ୟ ଭାର୍ଯ୍ୟାସିପଦ୍ମେପଦ୍ମଳୟେ ଶୁଭେ

ସର୍ବତଃ ତ୍ରାହିମାଂ ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ

( ଜଏ ମା ମହାଲଁଖୀ)

( ୨)

ସକାଲେ ଉଠି ସୁଇଲା ଖଟୁ ନାଇଁ ଧୁଇଲେ ମୁହୁଁ

ତାହାର ଘର୍କେ କମଳିନୀ ମୁରି ଦେସି ମୁହୁଁ ।

ବିନା ଆସନ୍ ପାରି ନାଇଁ ଖାଇବ ଖାନା ଆନି

ଦଖିନ୍ ମୁହାଁ ଖାଇ ବସଲେ ଆଏସହେସି ହାନି ।

ସଦାବେଳେ ଗାଲି ଝଗର୍ ଲାଗୁଥିଲେ ଘରେ

ନାଇଁ ରହେ ପଦ୍ମଲୟା ପଲେଇ ଯିବା ଦୁରେ ।

ସମ୍କୁ ଯଦି ସମାନଭାବେ ନାଇଁ ପର୍ସିବ ଅରନ୍

ନାଇଁ ମାନ୍ ଲେ ଦେବୀ ଦେବତା ଗୁରୁ ଇଷ୍ଟ ବାମ୍ହନ୍ ।

ନାଇଁ ଦେଲେ ଭିକାରୀ କେ ଚଉଲ୍ ମୁଠେ ଆନି

ରାଗ୍ ଲାଗସି ମହାଲଁଖୀ କେ କର୍ସି ସୁଖ ହାନି ।

 

ଆଜି ଠାନୁ ସାଧବାନି ଲୋ ଲଖୀ ବରତ୍ କର
ସବୁ ସମ୍ପତି ମିଲୁ ତତେ ଦୁଃଖ ହେବା ଦୂର ।
କହି କରି ଗାଁ ଖୁଲି ଥି ଚାଲ୍ଲେ ମହା ମାଇ
କାହାର୍ ଦୁଆରେ ଲିପା ପୁଛା ଝୁଟି ଗୁଟେ ନାଇଁ ।
କେନ୍ ମାଏ ଝି ସୁଇଛେ ତାଲ୍ ଦିହେଁ ନାଇଁ ଶାଢ଼ୀ
କିଏ ଅଛେ ମୁକୁଲା ବାଲେ ମୁହୁଁ ମାଡି କରି ।
ଛି ଛି ବୋଲି ସେନୁ ଭାଗଲେ ସାଗର ତନୟା
ଚଣ୍ଡାଲ୍ ପରା ର୍ ଶ୍ରୀୟା ଦୁଆରେ ହେଲେ ଛନେଠିଆ
ସେ ଲିପିଛେ ଘରଦୁଆର୍ କାଟି ପିଠଉ ଝୁଟି
ସୁଲ୍ହ ପଦମ୍ ଝୁଟି ଅଛେ ଜେନେ ପୂଜା କୁଠି ।
ଫୁଲ୍ ଦୁବ୍ ଭୋଗ ରାଗ ପୂଜା ଠାନେ ଥୁଇ
ଜୁହାର କରି ଡାକୁଚେ ସେ ମା ଗୋ ଦୟାମୟୀ ।
ମା ଗୋ ମା ଲଖମି ମା ଶ୍ରୀ ହରି ଭାରିଜା
ମୁଇ ହୀନ ଚନ୍ଡାଲେନ୍ ମା ଘେନବୁ ମୋର୍ ପୂଜା ।
ସୁନି କରି ଜଗତମାତା ଶ୍ରୀୟା ର୍ ମିନ୍ତି ଡାକ୍
ଠିଆ ହେଲେ ପୂଜା ଠାନେ ଘର୍ ଦିଶିଲା ଝକାସ୍
କହେଲେ ଆଲୋ ଶ୍ରୀୟା ତୁଇ ମାଗିପକା ବର୍
ତୋର୍ ଉପୁରେ ଉସତ୍ ମୁଇ ଉଛୁର୍ ନାଇଁ କର୍ ।
ମୁଡ଼େ ହାତ ରଖି ଶ୍ରୀୟା ର୍ ଆଖି ବୁହୁଛେ ପାନୀ

 

କହେଲା କାଁ  ବର ମାଗମି ମାଗି ନାଇଁ ଜାନି  ।

ଗାଏ ଗୁଠେ ଦେବୁ ଗୋ ମା ଲକ୍ଷେ ଗୋରୁ ଗାଏ

କୁବେର୍ ବାଗିର୍ ଧନ ଦେବୁ କୂଲେ ଦେବୁ ଛୁଏ  ।

ଅମର କରି ରଖବୁ ମତେ ଚାରି ଯୁଗେ ତୁଇ

ବାଏରି ହେଇଗଲୁ  କାଁଏ କହେଲେ ମହା ମାଇ  ।

ଯାହା ମାଗଲୁ ଦେଲି ତତେ ଅମର୍ ବର କେ ଛାଡି

ଜନମ୍ ନେଲେ ଦେବତା ଗଲେ ଇନେ ଯାଏ ମରି  ।

ଯେତେ ଦିନ ଜୀଇଁ ଥିବୁ ରହେବୁ ବଡା ସୁଖେ

ମରି ଗଲେ ବସବୁ ଯେଇ ବୈକୁଁ ଠ   ଲୁକେ  ।

ଲକ୍ଷ୍ମୀ ନାରାୟନ୍ ପାଦେ ତୋର ରହିଥାଉ ମନ

ମୋର୍ ପୂଜା କରି କରି ଗୁଅଉଁ ଥିବୁ ଦିନ  ।।

କ୍ରମଶଃ...

 

# କବି, ଶବଦ୍, ଆର୍ ମୁନୁଷ୍



ସୁନୀଲ କୁମାର ଅଗସ୍ତି

ଶବଦର୍ ପାହାଡ୍ କି'
କବିତାର୍ ପରବତ୍ ଉପରେ
ନି' ବସବାର୍ ପତେ
ଉସତାର୍ କହ କି' ନିସତାର୍
ନି'ନ ଇ' ମନେ,
ହେଲେ,ପାହାଡ୍ ପରବତ୍ ବାଗିର୍
ଇ'ଶବଦ୍ ଯେତେ 'ପରକୁତି' ଭାଏଲ୍ ?
ମୁନୁଷ୍ ତ' ହର୍ ଏକ୍ କିସମ୍ କେ
ନିଜର୍ ହଲିଆ ବନାବାର୍ ଥିଁ ଉସ୍ତାଦ୍ ଆଏ,
ଇ' ଶବଦର୍ ନଏଦ୍ ଧାର୍ କେ
'ବନ୍ଧନ୍' ଟେ ବାନ୍ଧି ଦେତା ବଏଲେ
ଇ' ଶବଦର୍ ଜଙ୍ଗଲ୍ କେ ଜୁଗି ପାରତା ବଏଲେ
ପୁରଥୀ ଗୁଲାର୍ ଶବଦ୍ ଯେତେକେ
ନିଜର୍ ହଲିଆ ବନେଇ ହେତା ବଏଲେ
ହର୍ ଏକ୍ ମୁନୁଷର୍ ଆଁଏଖ୍ ନୁ' ଆର୍
ପାଏନ୍ ନି' ନିଥରି ଆଏତା କାଏଁ ବାଗିର୍ ଲାଗସି,,

ଟିଟିଲାଗଡ଼, ବଲାଙ୍ଗୀର
ମୋ/୭୭୩୫୮୭୬୬୫୯

 

# ଜନମ୍ ମରନ୍



ବର୍ଷାରାଣୀ
ମହାମଲ୍ଲିକ

କୁଟି ପୁଇନ୍ କରି ଆତ୍ମା ଗୁଟେ
ମୁନୁଷ୍ ଜୀବନ୍ ପାଏସି
ହେଲେ ମୁନୁଷ୍ ଜନମ୍ ପାଏଲା ପରେ
ଚଲନ୍ ତାର୍ ଭୁଲି ଯାଏସି । ।

ଜନମ୍ ଠାନୁ ମରନ୍ ଯାଏକ୍
କେତେ ଦୁଖ୍ କେତେ ସୁଖ୍
ତଥାପି ମୁନୁସ୍ ନାଇଁ ହାରି କରି
ଚଲେଇଥିସି ତାର୍ ଉଜୁଗ୍ । ।

ଜେନ୍ ମାଟି ନେ ଜନମ୍ ତାର୍
ଜେନ୍ ମାଟି ନୁ ବଢବା,
ସମିଆ ଆଏବା ଇ ମାଟିର୍ ମୁନୁସ୍
ଇ ମାଟି ନେ ମିଶବା । ।

ଫି ଦିନ୍ କେତେ ରାଗ୍ ରୁଷା
କେତେ ହିସାଁ ଆର୍ ଅହଁକାର୍,
ନାଇଁ ସେ ଇଟା ସବୁଦିନ ଲାଗି
ଦିନେ ସବୁ ହେଇଯିବା ବେକାର୍ । ।

କେତେ ଲହ  କେତେ ହସିଁ ଇ ଜୀବନ ଥି
ରହିଛେ ତ ବାବୁ ଭରି
ଫିର୍ ବି ମୁନୁସ୍ ବାଟ୍ ଚାଲସି
କେତେ ଆଶା ସପନ୍ ଧରି । ।

ଜୀବନ୍ ଗୁଟେ ଏନ୍ତା ରାସ୍ତା
ସହଜେ ନାଇଁ ସରେ
ଜନମ୍ ଠାନୁ ମରନ୍ ଜେକ୍
ଆମେ ଚାଲୁଥିମା ଧୀରେ ଧୀରେ । ।

ଜନମ ଭୂଇଁ ନୁ ମଶାନ୍ ପଦା ତକ୍
ଚାଲିଛେ ସଫର୍ ଆମର୍
ଜନ୍ମୁ ମରନ୍ ଜେକ୍ ଚାଲୁଥିମା ଆମେ
ବାଟ୍ ହେଇଥାଉ ଯେତେ ଦୂର୍ । ।

ଜିଲ୍ଲା :ବରଗଡ଼

 

# ଭିକା ମହାଜନ୍ .....



ସାଇପ୍ରସାଦ ସାହୁ

ନୂଆବଛର୍ ଦିନେ ସବୁ ଲୋକ୍ ବାଗ୍ ମାନଙ୍କର୍ ସବୁଆଡେ ଖୁସିର୍ ମାହୋଲ୍ । ଗାଁ ନୁ ସହର୍ ତକ୍ ସବୁଆଡେ ଗହଗହ ଆର୍ ବଡା ଉଷନାକୀଥି ଲୋକ୍ ମାନେ ନୂଆବଛର୍ କେ ମାନୁଥିସନ୍ । ସହର୍ ହଉ କି ଗାଁ ଲୋକ୍ ମାନେ ସାଙ୍ଗ୍ ସାଥୀ ମାନଙ୍କର୍ ସାଙ୍ଗେ ମିଶିକରି ପିକ୍ ନିକ୍ ଯାଇଥିସନ୍ । ଇ ବଛର୍ ସୁଜିତ୍ କେନ୍ତା ହେଲା ଯେ ପିକ୍ ନିକ୍ ନାଇଁ ଯାଇ । ଗାଁର୍ ବନେ ଲୋକ୍ ବାଗ୍ ଛୁଆ ପୁତା , ସାଙ୍ଗ୍ ସାଥିମାନେ ମିଶିଗୁଲି କରି ଗାଁର୍ ପଶ୍ଚିମ୍ ଦିଗେ ରହିଥିବାର୍ ଗିଧ୍ ଘରା ଡଙ୍ଗର୍ ତଲ୍ , ରାନୀପୁର୍ ଝରିଏଲ୍ ,ନିସାନୀ ଡଙ୍ଗର୍ ତଲ୍ ତ ଆର୍ କେନ୍ କେନ୍ ମାନେ ଲଙ୍କର୍ ଆମ୍ ବଗୀଚା ତ ନିଜର୍ ନିଜର୍ ଖେତ୍ ଖଲାକେ ଭୁଜି କରିଯାଏସନ୍ । ଛୁଆ ନୁ ବୁଢ଼ା ତକ୍ ସଭେ ମଉଜ୍ ମଜଲିସ୍ କରିଥିସନ୍ । ସୁଜିତ୍ କାଣା ଭାବ୍ ଲା ଆର୍ ଇ ବଛର୍ ତାକର୍ ଘରେ ନେ ଶିକାର୍ ଭାତ୍ ରାନ୍ଧି କରି କୁଟୁମ୍ବ ଲୋକ୍ ର ସାଙ୍ଗେ ନୂଆବରଷ୍ ମନେଇ ଥିଲା । ଦୁଇପହରେ ବେଲାକେ ଖାନ୍ ପାନ୍ ସରେଇ କରି ସୁଜିତ୍ ଘରେ ନେ ବସି କରି ବୋର୍ ହେଉଥେ । କେତେକ୍ ହେଲେ ନୂଆବଛର୍ ଦିନେ ବୋର୍ ହେମି ହେଲେ ବଏଲା ଆର୍ ଛନେକ୍ ବେଲ୍ ଗଲା ଉତାରୁ ସୁଜିତ୍ ଘରୁନ୍ ଫଟ୍ ଫଟି ଧରି କରି ରାନୀପୁର୍ ଝରିଏଲ୍ ବୁଲି ବାହାରିଲା । ଲୋକ୍ ବାଗ୍ ମାନଙ୍କର୍ ଭିଡ୍ ଦେଖି କରି ସୁଜିତ୍ ଅକାଭୋଦ୍ ହେଇଗଲା । ଛନେକ୍ ଦେଖ୍ ଲା ଆର୍ କହେଲା ; ବାପ୍ ରେ ପୁରୀଧାମ୍ ଭଲିଆ ଆମର୍ ଝରିଏଲ୍ ଫୁନି ଇଁ ନୂଆବଛର୍ ଦିନେ ସବୁ ଲୋକ୍ ବାଗ୍ ମାନଙ୍କର୍ ଭିଡ୍ ହେଇଛେ । ସୋମନାଥ ମନ୍ଦିର ,

 

ଚଣ୍ଡୀ ମନ୍ଦିର ଦର୍ଶନ କରି ମହାପୁରୁକେ ମୁଡିଆ ମାର୍ ଲା । ଫେର୍ ପାହାଡ଼ ଉପରେ ରହିଥିବାର୍ ତନ୍ତ୍ର ମନ୍ତ୍ରର୍ ପୀଠ୍ ଚଉଷଠୀ ଯୋଗିନୀ ମନ୍ଦିର୍ ବୁଲି କରି ସେ ପାଖର୍ କୀର୍ତ୍ତିରାଜିର୍ ଚିତ୍ର ମାନଙ୍କର୍ ମୋବାଇଲ୍ ଥି ଫଟୋ ଉଠାଲା । ସେଠାନୁ ଦିଶୁଥିବାର୍ ପୁଡା ଇଟାନେ ତିଆରି ହୋଇଥିବାର୍ ଇନ୍ଦ୍ରଲାଠ୍ ମନ୍ଦିର୍ ବୁଲି ଗଲା । ବାଟେ ଗଲା ବେଲ୍ କେ ବୁଢା ଗୁଟେ ପଥର୍ ଉପ୍ ରେ ବାଡି ଖଣେ ଧରି କରି ବସିଥେ । ସୁଜିତ୍ ପଚ୍ ରାଲା ; ବୋବା ହେତ୍ କି ଖରା ବର୍ଷା ଶୀତ୍ କାକର୍ ହେଲେବି ଇନ୍ଦ୍ରଲାଠ୍ ମନ୍ଦିର୍ ଇଟ୍ କେନ୍ତା କିଛି ନାଇଁ ହେବାର୍ । କେନ୍ତା କରି ଇ ମନ୍ଦିର୍ ବନିଛେ । ଗୁଟା ଗୁଟା କରି ସବୁ କଥା ବୁଢ଼ା ବୋବା ବୁଝେଇଦେସି । ସବୁ କହିସାର୍ ଲା ଉତାରୁ ବୁଢାବୋବା ସୁଜିତ୍ କେ କହେସି , ବାବୁ କେନ୍ ଗାହାର୍ ଗୋ ତମେ ? କେନ୍ ନୁ ଆସିଛ ? ସୁଜିତ୍ କହେସି ; ମୁଇଁ ସିନ୍ଧେକେଲାର୍ ଭିକା ମହାଜନର୍ ନାତି ବୋବା । ଏତ୍ କି କଥା ଶୁଣି କରି ବୁଢ଼ା ମୁଡେ ନେ ହାତ୍ ଦେଇଦେଲା ଆର୍ କହେଲା ତୋର୍ ଦାଦି ଆମର୍ ଇ ଅଞ୍ଚଲ୍ ନେ ଥିବାର୍ ପାଞ୍ଚ୍ ଖଣ୍ଡ ଥାନା ଭିତ୍ ରେ ରହିଥିବାର୍ ହେତ୍ କିତା ଗାଁର୍ ମହାଜନ୍ । ମହାଜନ୍ ଆମର୍ ଲାଗି ମହାପୁରୁ ଲେଖେ ଥିଲା । କେତେ ଲୋକ୍ କେ କେତେ କାଣା ଦେଇଛେ ଯେ କହେଲେ ନାଇ ସରେ । ତାର୍ ଦୁଆର୍ କେ ଯେନ୍ ଗଲେ ବି ଖାଲି ହାତେ ନାଇଁ ଫିରୁ ଥାଇ । ଖାନାପିନା ଖୁଏଇ କରି ବଟଉଥିଲା । ସମ୍ କୁ ବନେ ମାଏନ୍ ତା କରୁଥିଲା । ଏନ୍ତା ମହାଜନ୍ ଇ ସଂସାର୍ ଥି ଆର୍ ଦେଖ୍ ବାର୍ କେ ନାଇଁ ମିଲ୍ ବାର୍ । ମହାଜନ୍ ମରି କରି ପନ୍ଦର୍ ବଛର୍ ହେଲେ ଫୁନି ଆଏଜ୍ ଭିଲ୍ ସେ ଆମର୍ ଲାଗି ଅମର୍ । ତାକର୍ ନାଁ ଏବେ ଫୁନି ଗାଁ ଗହଲିନେ ପରୁଛେ । ଆମର୍ ଭିକା ମହାଜନ୍ କେ କେଭେଁ ବି ଲୋକ୍ ନାଇଁ ଭୁଲନ୍ । ଭିକା ମହାଜନ୍ ଆମର୍ ଲାଗି ମହାପୁରୁ ଲେଖେ ଥିଲେ । ସେ ଆମର୍ ଲାଗି ମହାଦେବ୍ । ଏତ୍ କି କଥା ଶୁନି କରି ସୁଜିତର୍ ମୁହଁନୁ

 

ଆର୍ କିଛି କଥା ନାଇଁ ବାହାରିଲା । ବୁଢ଼ାକେ ଜୁହାର୍ ଗୋ ବୋବା କହେଲା ଆର୍ ସିନ୍ଧେକେଲା ଆଡେ ଫଟ୍ ଫଟି ଧର୍ ଲା ଆର୍ ଗାଁ କେ ବାହାରିଗଲା ।

ସିନ୍ଧେକେଲା , ବଲାଙ୍ଗୀର

ମୋ. - ୯୯୩୭୦୩୪୭୪୨

 

# ଗାଁରେ ଆଧୁନିକ ସଭ୍ୟତାର ପ୍ରଭାବ



ରଞ୍ଜିତା ରାଉଳ

ଗାଁରେ ଆଧୁନିକ ସଭ୍ୟତାର ପ୍ରଭାବ ଏତେ ମାତ୍ରାରେ ବିସ୍ତାର ଲାଭ କରିଛି ଯେ, ଗାଁର ଦୃଶ୍ୟ ଏବେ ଅତୀତର ସ୍ମୃତି ପାଲଟି ଯାଇଛି, ଦିନକୁ ଦିନ ଗାଁର ଦୃଶ୍ୟ ବଦଳିବାରେ ଲାଗୁଛି । ସତରେ କୁଆଡ଼େ ହଜିଗଲା ଗାଁର ଦୃଶ୍ୟ..... ଗାଁର ଦୃଶ୍ୟ ଏବେ ଆଉ ଦେଖିବାକୁ ମିଳୁନି, ବେଳେବେଳେ ଇଚ୍ଛା ହୁଏ ପୁଣି ଥରେ ସେହି ପୁରୁଣା ଦିନ ପୁରୁଣା ସ୍ମୃତି ଫେରି ଆସନ୍ତା କି ? ଅସଜଡା ସ୍ୱପ୍ନ ସବୁ ସଜାଡି ହୁଅନ୍ତା । ଗାଁ ଏବେ ସହର ସହର ବାସୁଛି । ଆଉ ଗାଁର ଦୃଶ୍ୟ ଦେଖିବାକୁ ମିଳୁନି ଯେଉଁ ଆଡେ ଚାହିଁଦେଲେ ଖାଲି ଆଧୁନିକତା ଆଉ ଆଧୁନିକତା । ଆଧୁନିକତା କ'ଣ  ଗାଁର ଦୃଶ୍ୟ ଠାରୁ ଅଧିକ ସୁଖପ୍ରଦ ହୋଇପାରିବ ? ସହରର ବାସ୍ନା କ'ଣ ଗାଁର ମହତ୍ତ୍ୱ ବୁଝିପାରିବ ? ଏବେ ବି ମନରେ ପ୍ରଶ୍ନବାଚୀ ଉଠେ ସତରେ କ'ଣ ଗାଁର ଦୃଶ୍ୟ ଅଭୂଲା ସ୍ମୃତି ଓ ଅଫେରା ଅତୀତ ହୋଇ ଯିବ । କ'ଣ ସେ ଗାଁ ର ଦୃଶ୍ୟ ଆଉ ଥରେ ଫେରି ଆସିବ ? ? ? ?

ଭାଗବତ ଟୁଙ୍ଗୀର ପୁରାଣ ପୋଥି ଆଉ କାନକୁ ଶୁଭୁନି ସତେ ଯେମିତି ଚିର ନିଦ୍ରାରେ ଶୋଇପଡିଛି ସେ ସମୟ । ମାଟି ଚୁଲି, ହାଣ୍ଡି ରନ୍ଧା ଭାତ, ଢିଙ୍କି କୁଟା ଚାଉଳ, ଶିଳରେ ବଟା ଏସବୁ କୁଆଡ଼େ ଗଲା ..... । ସଞ୍ଜ ସକାଳେ ଆଉ ଗହଳି ନାହିଁ, ନଡା ଛପର ଘର ନାହିଁ, ବୋହୂର

 

ମୁଣ୍ଡରେ ଓଢଣା ନାହିଁ, ବାହୁନା କାନ୍ଦଣା ନାହିଁ, ଆମ୍ବ ତୋଟା ରେ ଆଉ ସେ ରଜ ଦୋଳି ନାହିଁ, ଝିଅ ବୋହୂଙ୍କ ମେଳ ନାହିଁ, ନଈ ପୋଖରୀରେ ଗାଧୋଇବାର ଦୃଶ୍ୟ ନାହିଁ, ସାଙ୍ଗ ସାଥୀ ମେଳର ଖୁସି ନାହିଁ, ଲଣ୍ଠନ ବତୀର ଆଲୁଅ ନାହିଁ, ବଳଦଟଣା ଶଗଡ ଗାଡି ନାହିଁ, ବୋହୂଚୋରୀ, ଲୁଚକାଳି, ପୁଚି, କବାଡି ଖେଳ ଇତ୍ୟାଦି..... ଏସବୁ ଅଦୃଶ୍ୟ ହେବାରେ ଲାଗିଛି, ସତରେ କ'ଣ ଆଉ କେବେ ବି ଏ ଦିନ ଆସିବନି । ରେଡିଓରେ ଆକାଶବାଣୀର ଶବ୍ଦ, ଟେଲିଭିଜନର କଳା ଧଳା ଦୃଶ୍ୟ, ଚିଠି, ଲଫାପା, ଡାକଘର ଏସବୁ ଆଉ ଦୃଶ୍ୟମାନ ହେଉନି ।

ସେ ଅଭୁଲା ଦିନ ଆଜି ମଧ୍ୟ ସ୍ମରଣୀୟ ।

ବର୍ଷା ହେଲେ ଗୋଟିଏ ଛତାରେ ଏକା ସାଙ୍ଗରେ ତିନି ଚାରି ଜଣ ସାଙ୍ଗ ମିଶି ଯିବାର ଖୁସିର ମୁହୂର୍ତ୍ତ... କ'ଣ ଆଜିର ସମୟର ରେନ୍‌କୋଟ୍ ଦେଇ ପାରିବ ? ? ? ? ବହି ବସ୍ତାନି କାନ୍ଧରେ ପକାଇ ସ୍କୁଲ୍ ଯିବାର ମଜା, ସ୍କୁଲ ଅଧାରୁ ପଳାଇ ଆସି ଘରେ ମାକୁ ମିଛ କହିବା, ଲୁଚି ଲୁଚି ଆମ୍ବ ତୋଳିବା, ସାରଙ୍କ ବେତ ମାଡକୁ ଡରି ସ୍କୁଲ୍ ଛୁଟି କରି ସାଙ୍ଗସାଥୀ ମେଳରେ ପଡ଼ି ଦୁଷ୍ଟାମି କରିବାରୁ ଶେଷରେ ବାପାଙ୍କ ପାଖକୁ ମାଡ ଖାଇବା, ଟିକେ ଟିକେ କଥାରେ ମା'ର ଆକଟ ସତରେ ଆଜି ଏ ସବୁ କିଛି ବି ନାହିଁ, କେବଳ ଖାଲି ଛବି ହୋଇ ରହିଯାଇଛି ସତ କିନ୍ତୁ ସେତେବେଳେ ପିଲାମାନଙ୍କର ପିତା, ମାତା ଓ ଗୁରୁଙ୍କ ପ୍ରତି ଥିଲା ଡର, ଭୟ, ଭକ୍ତି, ଶ୍ରଦ୍ଧା ଓ ସମ୍ମାନ । ଗାଁର ଆଧୁନିକତାର ପ୍ରଭାବରେ ଏବେର ସମୟରେ ଗାଁର ଦୃଶ୍ୟ ଲୋପ ପାଇବାକୁ ଯାଉଛି ସତ କିନ୍ତୁ ତତସହିତ ପିଲାମାନଙ୍କର ଗୁରୁଜନ ମାନଙ୍କ ପ୍ରତି ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ନାହିଁ । ମନରେ ସ୍ନେହ ଶାନ୍ତି ଶୃଙ୍ଖଳା ପରିବର୍ତ୍ତେ ଅଶାନ୍ତି ଧିରେ ଧିରେ ବଢ଼ିବାରେ ଲାଗିଛି । ଆଜିର ଶିଷ୍ୟ ଆଉ ଗୁରୁଙ୍କୁ ଭକ୍ତି କରୁନାହାନ୍ତି ବରଂ

 

ଆଜିର ଆଧୁନିକୀକରଣ ପିଲାଙ୍କୁ ଗୁରୁଜନମାନେ ଡାକିବାକୁ ଲାଗିଲେଣି ତାଙ୍କର ଜିଦ୍ ଓ କୁପ୍ରଭାବ ପାଇଁ ।

ଆଉ ମାଆର ପଣତ କାନି ନାହିଁ, ଆଧୁନିକତା ମା ମାନେ ଆଉ ଶାଢୀ ପିନ୍ଧିବାକୁ ପସନ୍ଦ କରୁନାହାନ୍ତି । ଆଉ ସେ ଲୋରୀ ନାହିଁ, ନାନାବାୟା ଗୀତ ବି ନାହିଁ, ଶିଶୁଟି ମାଆର ସ୍ନେହ ଅପେକ୍ଷା ମୋବାଇଲ୍ କୁ ଅଧିକ ନିଜର ଭାବେ କାରଣ ଆଜି ଏ ଆଧୁନିକ ସମାଜରେ ଶିଶୁଟିଏ ଯେତେବେଳେ ଅଝଟ ହୁଏ ମାର ସ୍ନେହ ବଦଳରେ ମାଆମାନେ ମୋବାଇଲ୍ ର ଆବଶ୍ୟକତାକୁ ଅଧିକ ଗୁରୁତ୍ୱ ଦିଏ, ଯାହାର ପ୍ରଭାବ ଫଳରେ ଶିଶୁଟି ମାଆର ସ୍ନେହ ମମତା ଠାରୁ ଦୂରେଇ ରୁହେ । ସହରୀ ସଭ୍ୟତାକୁ ଲୋକମାନେ ଏତେ ନିଜର ନିଜର କରୁଛନ୍ତି, ଆଜିର ଲୋକମାନେ ଲଙ୍ଗଳ ଧରି ଚାଷ କରିବାକୁ ଆଉ ପସନ୍ଦ କରୁନାହାନ୍ତି, ତା ବଦଳରେ ଟ୍ରାକ୍ଟରକୁ ଚାଷକାର୍ଯ୍ୟରେ ବ୍ୟବହାର କରୁଛନ୍ତି । ଆଉ ସେ ଶଗଡଗାଡିର ଦୃଶ୍ୟ ଦେଖିବାକୁ ମିଳେନି ବରଂ ଆବଶ୍ୟକତା ଠାରୁ ଅଧିକ ମାତ୍ରାରେ ଯାନବାହନର ଚାହିଦା ବଢିବା ସହିତ ପ୍ରଦୂଷଣ ମାତ୍ରା ଧିରେ ଧିରେ ଗାଁକୁ ମଧ୍ୟ ବ୍ୟାପୀ ତାହା ସହରୀ ଢାଞ୍ଚାରେ ପହଞ୍ଚାଇ ଦେଇଛି । ଆଉ ଶୁଣିବାକୁ ମିଳେନି ଢୋଲ, ମୃଦଙ୍ଗ, ଖଞ୍ଜଣୀର ଶବ୍ଦ, କୌଣସି ଶୁଭ କାର୍ଯ୍ୟରେ ଏସବୁ ଆବଶ୍ୟକତା ପଡୁନାହିଁ ବରଂ ଏହା ବଦଳରେ ଆଧୁନିକ ଡି.ଜେ. ସାଉଣ୍ଡର ସଂଗୀତର ପ୍ରଭାବ ଲୋକ ମାନଙ୍କୁ ବହୁଳ ମାତ୍ରାରେ ପ୍ରଭାବିତ କରିଥାଏ ।

ଏବେ ବିଜ୍ଞାନ ପଦ୍ଧତି ଯେତେ ମାତ୍ରାରେ ଅଗ୍ରଗତି ହେଉଛି ସେତେ ମାତ୍ରାରେ ସମସ୍ତ ପ୍ରକାରର ବ୍ୟବସ୍ଥା ଏତେ ବହୁଳ ମାତ୍ରାରେ ବୃଦ୍ଧି ହୋଇଛି ଯେ, ଲୋକେ ଅଳ୍ପ ସମୟରେ ଅଧିକ କାର୍ଯ୍ୟ ଯାନ୍ତ୍ରିକ ଦ୍ରବ୍ୟର ଉପଯୋଗ ମାଧ୍ୟମରେ ଅତି ସହଜରେ କରନ୍ତି ସତ କିନ୍ତୁ ମୋବାଇଲ ଯୁଗରେ ଶାନ୍ତି ନାହିଁ । ମାନବିକତାର ମୂଲ୍ୟବୋଧର ହ୍ରାସ ହେବାରେ ଦିନକୁ

 

ଦିନ ଲାଗୁଛି ।

ଆଧୁନିକ ସଭ୍ୟତା ଏସବୁକୁ ଧିରେ ଧିରେ ଦୂରେଇ ଦେଉଛି । ମାତୃଭାଷା ପ୍ରତି ମମତା ନାହିଁ, ଓଡ଼ିଆ ହୋଇ ଇଂରାଜୀ ଭାଷାକୁ ଓ ବିଦେଶୀ ଭାଷାକୁ ସମସ୍ତେ ଆପଣେଇବାକୁ ବେଶୀ ପସନ୍ଦ କରୁଛନ୍ତି । ପୁସ୍ତକ ଅପେକ୍ଷା ଅନଲାଇନ ପାଠକୁ ଅଧିକ ପସନ୍ଦ କରୁଛନ୍ତି ଏବଂ ଖବରକାଗଜ ଅପେକ୍ଷା ସୋସିଆଲ ମିଡ଼ିଆ ଲୋକଙ୍କୁ ଅଧିକ ଆକର୍ଷିତ କରୁଛି । ଅତୀତର ସେ ସ୍ନେହ, ପ୍ରେମ, ବିଶ୍ୱାସ, ଭଲପାଇବା, ସୁଖ ଓ ଶାନ୍ତି, ଶୃଙ୍ଖଳିତ ପରିବେଶ ର ଧିରେ ଧିରେ ପରିବର୍ତ୍ତନ ଘଟୁଛି, ସଂସ୍କୃତି ଓ ପରମ୍ପରା ଉପରେ ମଧ୍ୟ ଆଧୁନିକ ସଭ୍ୟତାର ପ୍ରଭାବ ବହୁଳ ମାତ୍ରାରେ ପଡି ତାହା ନୀତିହୀନ ପରିଲକ୍ଷିତ ହେଉଛି । ସତେ ଯେପରି ଗାଁ ର ଦୃଶ୍ୟ କୁଆଡେ ହଜି ଗଲାଣି ।

ଗାଁର ଦୃଶ୍ୟ ଏବେ ଆଧୁନିକ ସଭ୍ୟତାର ପ୍ରଭାବରେ ହଜିଯାଇ ତାହା ଅତୀତର ଅଭୁଲା ସ୍ମୃତି ହୋଇ ହୃଦୟରେ ବସା ବାନ୍ଧି ରହିଯାଇଛି ।

(ରାଜ୍ୟ ସହ ସଂପାଦିକା)
ଓଡ଼ିଶା ସାହିତ୍ୟିକ ସଂଗଠନ, ଭୁବନେଶ୍ୱର, ଓଡ଼ିଶା
ଦୂରଭାଷ - ୮୫୯୮୮୮୦୧୫୨, ଅନୁଗୋଳ

 

# ନୃତ୍ୟରେ ନିପୁଣା ଶୁଭଶ୍ରୀ



ରାମ ଚନ୍ଦ୍ର ପ୍ରଧାନ

ଦୁନିଆରେ ଏମିତି କିଛି କୁନି ପ୍ରତିଭା ଅଛନ୍ତି, ଯାହାକୁ ଭଗବାନଙ୍କ ବରଦାନ ବୋଲି ବିବେଚନା କରାଯାଏ । ସେଇ କୁନି ପ୍ରତିଭାମାନଙ୍କ ଭିତରେ କିଛି ବିସ୍ମୟ ଜନିତ ଗୁଣ ଭରି ରହିଥାଏ, ଯାହା ସାରା ଦେଶ ତଥା ରାଜ୍ୟରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥାଏ । ଆସନ୍ତୁ ଆଜି ଆମେ ଏମିତି ଜଣେ ପ୍ରତିଭାଙ୍କ ବିଷୟରେ ଜାଣିବା, ଯାହାଙ୍କ ନୃତ୍ୟକୁ ଯିଏ ବି ଦେଖିବ ପ୍ରଶଂସା ନ କରି ଜମାରୁ ରହି ପାରିବନି । ସେ ଆଉ କେହି ନୁହଁନ୍ତି ଆମ ଗଞ୍ଜାମ ଜିଲ୍ଲା ଆସିକା ନିକଟସ୍ଥ କଲେଜ ଛକ ସରକାରୀ ଟେକ୍ନିକାଲ ଉଚ୍ଚ ବିଦ୍ୟାଳୟର ନବମ ଶ୍ରେଣୀ ଛାତ୍ରୀ ଶୁଭଶ୍ରୀ ନାୟକ । ବୟସ ମାତ୍ର ତେର । ତାଙ୍କ ବାପାଙ୍କ ନାମ ପ୍ରଶାନ୍ତ ନାୟକ ଓ ମାତାଙ୍କ ନାମ ପୁଷ୍ପାଞ୍ଜଳି ନାୟକ । ବାପା ଗୋଟେ ଇଲେକ୍ଟ୍ରିକ ଦୋକାନ କରି ପରିବାରର ଗୁଜୁରାଣ ମେଣ୍ଟାନ୍ତି । ଆର୍ଥିକ ସ୍ଥିତି ସେତେ ସ୍ୱଚ୍ଛଳ ନୁହେଁ । ଏଥିପାଇଁ ବାପାଙ୍କୁ ବେଳେବେଳେ ପ୍ଲମ୍ବର କାମ ବି କରିବାକୁ ପଡ଼େ । ଅଭାବ ଅନାଟନ ଭିତରେ ବି ପ୍ରଶାନ୍ତ ବାବୁ ନିଜ ସଂସାର ଗାଡ଼ିକୁ ସୁରୁଖୁରୁରେ ଚଳାଇ ଆସୁଛନ୍ତି । ପିଲାଟିବେଳୁ ନୃତ୍ୟକଳା ପ୍ରତି ଶୁଭଶ୍ରୀଙ୍କ ମନରେ ଅହେତୁକ ଆଗ୍ରହ ଜନ୍ମିଥିଲା । ମାତ୍ର ୩ ବର୍ଷ ବୟସରୁ ଦୂରଦର୍ଶନ ତଥା ବିଭିନ୍ନ ଟିଭି ଚାନେଲରେ ପ୍ରସାରିତ ହେଉଥିବା ନୃତ୍ୟ କାର୍ଯ୍ୟକ୍ରମକୁ

 

ନିରୀକ୍ଷଣ କରି ଶୁଭଶ୍ରୀ ବେଶ୍ ଉଲ୍ଲସିତ ହେଉଥିଲେ ଏବଂ ତାଙ୍କ କୁନି ପାଦକୁ ନୃତ୍ୟ ସଂଗୀତର ତାଳେ ତାଳେ ଏପଟ ସେପଟ କରୁଥିଲେ । ଆଉ ଝିଅର ଏପରି ନୃତ୍ୟ ପ୍ରତି ଆକର୍ଷଣ ଦେଖି ପିତାମାତା  ଓ ପଡୋଶୀ ଫକୀର ସାବତ  ଏ ଦିଗରେ ପାଦ ଥାପିବା ପାଇଁ ପ୍ରେରଣା ଯୋଗାଇ ଥିଲେ | ସେମାନଙ୍କ ପ୍ରେରଣାକୁ ପୁଞ୍ଜିକରି ଶୁଭଶ୍ରୀ ଆଉ ପଛକୁ ଫେରି ନ ଥିଲା । ଚତୁର୍ଥ ଶ୍ରେଣୀରେ ପଢୁଥିବା ସମୟରେ ବାପା ୨୦୧୭ ମସିହା ଜୁନ ମାସ ଗ୍ରୀଷ୍ମ ଛୁଟିରେ କବିସୂର୍ଯ୍ୟ ନଗର ସ୍ଥିତ ହରିହର ଶାସ୍ତ୍ରୀୟ ସଂଗୀତ ବିଦ୍ୟାଳୟରେ ତା'ର ନାମ ଲେଖାଇ ଥିଲେ । ସେହି ଦିନ ଠାରୁ ପାଠପଢା ସହ ନୃତ୍ୟକଳାକୁ ଆପଣେଇ ଉଭୟ ଦିଗରେ ଗଠନମୂଳକ କର୍ମପନ୍ଥାକୁ ସେ ଆଦରି ନେଇଥିଲେ । ଖାଲି ସେତିକି ନୁହେଁ ତା' କୁନି ପାଦର ନୁପୁର ନିକ୍ୱଣ ଧ୍ୱନି ଓ ମୁଦ୍ରାଛାନ୍ଦ, ଅଙ୍ଗ ରାଗ ପରିବେଷଣର ଚମତ୍କାରୀତାକୁ ଉପଭୋଗ କରି ଦର୍ଶକମାନେ ତାଙ୍କୁ  କରତାଳି ଦ୍ୱାରା ଉତ୍ସାହିତ କରୁଥିଲେ, ଯାହାଙ୍କ ପ୍ରଶଂସା ଆଉ ଭଲ ପାଇବା ଶୁଭଶ୍ରୀଙ୍କୁ ଏ ଦିଗରେ ଯଥେଷ୍ଟ ଆଗକୁ ଯିବାକୁ ବାଧ୍ୟ କରେଇ ଥିଲା ।

ଅତି ଛୋଟ ବୟସରୁ ନାଚ ପ୍ରତି ସୌକ ରଖୁଥିବା ଶୁଭଶ୍ରୀଙ୍କୁ ଆଗକୁ ନେବାରେ ସହାୟତା ଦେଇଥିଲା କରୋନାର ଲକ୍ ଡାଉନ୍ । ଘରର ଚାରି କାନ୍ଥ ଭିତରେ ଦିନକୁ ଚାରିରୁ ପାଞ୍ଚ ଘଣ୍ଟା ନୃତ୍ୟ ଅଭ୍ୟାସ କରି ଆଜି ସେ ପଲ୍ଲୀରୁ ଦିଲ୍ଲୀ ଯାଏଁ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି । ନୃତ୍ୟର ବିଭିନ୍ନ ବିଭାଗ ଯଥା ଆଧୁନିକ, ପଲ୍ଲୀ, ମଣିପୁରୀ, କଥକ, ସମ୍ବଲପୁରୀ, ଛଉ, ଓଡିଶୀ,ଲୋକନୃତ୍ୟ ଇତ୍ୟାଦି ରହିଥିବା ବେଳେ ବିଶେଷ କରି ସେ ଓଡ଼ିଆ ମାଟି ଓ ସଂସ୍କୃତିର ଗୌରବାବହ ଐତିହ୍ୟକୁ ବଜାୟ ରଖିବା ପାଇଁ ଓଡିଶୀ ଭଳି ଶାସ୍ତ୍ରୀୟ ନୃତ୍ୟକୁ ଆପଣେଇ ନେବାର ମାନସିକତା ତାକୁ ଅସ୍ତବ୍ୟସ୍ତ କରିଥିଲା | ଶାସ୍ତ୍ରୀୟ ନୃତ୍ୟରେ ମାନ ଯଥେଷ୍ଟ ଉର୍ଦ୍ଧରେ ଥିବାରୁ ଏହାପ୍ରତି ତା'ର ଆଗ୍ରହ ଦ୍ୱିଗୁଣିତ ହୋଇଥିଲା । ଜିଲ୍ଲା,

 

ପ୍ରାଦେଶିକ, ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ବେଶ୍ ସୁନାମ ସାଉଁଟି ଥିବା ଲୋକକଳାର ଗୁରୁ ତଥା ଓଡିଶା ସଂଗୀତ ନାଟକ ଏକାଡେମୀର ପ୍ରାକ୍ତନ ସଦସ୍ୟ ସ୍ୱର୍ଗତ ନବଘନ ପରିଡାଙ୍କ ସୁପୁତ୍ର ଓଡିଶୀ ଗୁରୁ ଅଭୟ କୁମାର ପରିଡ଼ାଙ୍କ ଠାରୁ ଏ ଦିଗରେ ଉତ୍ତମ ତାଲିମ, ଯଥୋଚିତ ପ୍ରେରଣା ଓ ଅକୁଣ୍ଠ ପ୍ରୋତ୍ସାହନ ପାଇ ଅନେକଙ୍କ ଭିତରେ ଜଣେ ହୋଇ ଠିଆ ହେବାର ଉଦେଶ୍ୟକୁ ସେ ଚରିତାର୍ଥ କରିପାରିଛନ୍ତି । ତନ, ମନ ଆଉ ସାଧନାରେ ବ୍ରତୀ ହୋଇ ଶୁଭଶ୍ରୀ ଓଡିଶୀ ନୃତ୍ୟକଳାର ବିଭିନ୍ନ ବିଭାଗ ଯଥା ସ୍ଥାୟୀ, ମଙ୍ଗଳା ଚରଣ, ପଲ୍ଲବୀ, ଅଭିନୟ ଓ ମୋକ୍ଷ ଆଦିକୁ ନିଜ କୁନି ପାଦର ଘୁଙ୍ଗୁର ତାଳେ ସଫଳ ରୂପାୟନ କରିପାରିଛନ୍ତି । ଏତଦ୍ ବ୍ୟତୀତ ସେ ସମ୍ବଲପୁରୀ ଓ ଆଦିବାସି ନୃତ୍ୟକଳାରେ ମଧ୍ୟ ପାରଙ୍ଗମ । ନିଜ ଓଡିଶୀ ନୃତ୍ୟ ପରିବେଷଣକୁ ସେ ସୋସିଆଲ ମିଡିଆ(ୟୁ ଟ୍ୟୁବ)ରେ ପୋଷ୍ଟ ପରି ଦର୍ଶକମାନଙ୍କ ଠାରୁ ଢେର ସାରା ପ୍ରଶଂସା ସାଉଁଟିଛନ୍ତି । ସୋସିଆଲ ମିଡିଆରେ ତାଙ୍କର ୩.୫ ହଜାର ଅନୁଗାମୀ ଅଛନ୍ତି । ନିଜର ଦୃଢ଼ ଇଚ୍ଛା ଶକ୍ତି ଓ କିଛି ନୂଆଁ କରିବାର ନିଶା ଶୁଭଶ୍ରୀଙ୍କୁ ଦେଇଛି ଗୋଟିଏ ପରେ ଗୋଟେ ସଫଳତା । ଏ ଦିଗରେ ସାଙ୍ଗସାଥି ଓ ସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀ ମାନଙ୍କ ପ୍ରେରଣା ତା'କୁ ଆଉ ଟିକିଏ ଆଗକୁ ବଢିବାର ଇନ୍ଧନ ଯୋଗାଇ ଦେଇଛି ।

ଶୁଭଶ୍ରୀ ଭଦ୍ର, ନମ୍ର ଆଉ ମେଳାପୀ ଅଟନ୍ତି । ଶାସ୍ତ୍ରୀୟ ନୃତ୍ୟରେ ସେ ଯେମିତି ସିଦ୍ଧହସ୍ତା ପାଠପଢ଼ାରେ ବି ସେମିତି ଆଗୁଆ । ଜଣେ ଛାତ୍ରୀ ହିସାବରେ ସେ ଯେତିକି ସମୟ ପାଠପଢ଼ାରେ ଦେଇଥାଏ, ଆନ୍ତସଙ୍ଗିକ ନୃତ୍ୟକଳାକୁ ସାଧନାର ଯଜ୍ଞ ବେଦିରେ ସିଦ୍ଧି ପ୍ରାପ୍ତ ହେବା ପାଇଁ ସେତିକି ଆହୁତି ମଧ୍ୟ ଅର୍ପଣ କରିଥାଏ । ସେ ଭଲଭାବେ ଜାଣିଛି ଯେ ଜୀବନରେ ସଫଳତା ପାଇବାକୁ ହେଲେ ଆପଣାର ସାଧନାକୁ ବଳବତ୍ତର ରଖିବାକୁ ପଡିବ । ଏହାସହ ବାପାମାଙ୍କ ସମୟୋଚିତ ପ୍ରେରଣା ଓ ପ୍ରୋତ୍ସାହନ ଏ ଦିଗରେ ଆଗକୁ ମାଡି

 

ଚାଲିବାର ସହାୟକ ହୋଇଛି । ବିଶେଷ କରି କଳାପ୍ରେମୀ ତା'ର ମାତାପିତା ତାଙ୍କୁ ମଞ୍ଚରେ ଅଭିନୟ କରିବା ପାଇଁ ସଜେଇ ଦେବାରେ ଆଗ୍ରହ ଏ କ୍ଷେତ୍ରରେ ଯଥେଷ୍ଟ ପ୍ରେରଣା ଯୋଗାଇଛି ।

ପିଲାଟି ବେଳୁ ସେ ଆଖପାଖ ଅଂଚଳ ଓ ବିଦ୍ୟାଳୟ ସ୍ତରରେ ହେଉଥିବା ବିଭିନ୍ନ ନୃତ୍ୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ସଭିଙ୍କ ଠାରୁ ଅନେକ ପ୍ରଶଂସା ସାଉଁଟି ପାରିଛନ୍ତି । ଶୁଭଶ୍ରୀ ଫେବୃଆରୀ ୨୦୧୮ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଆର.ଦାମୋଦର ପଲ୍ଲୀ ମାତୃବିହାର, ଫେବୃଆରୀ ୨୦୧୮ କବିସୂର୍ଯ୍ୟ ବଳଦେବ ରଥ ଜୟନ୍ତୀ ମହୋତ୍ସବ ଓ ୨୦୧୯ ପୁରୀ ରାଜ୍ୟ ସ୍ତରୀୟ ଶିଶୁ ମହୋତ୍ସବରେ ଓଡିଶୀ ନୃତ୍ୟ ପରିବେଷଣ କରି ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଏତିକିରେ ତାଙ୍କ ସଫଳତାର ଯାତ୍ରା ଶେଷ ହୋଇ ନ ଥିଲା । ପୁଣି ସେ ୨୦୧୯ ବ୍ଲକସ୍ତରୀୟ ଶିଶୁ ମହୋତ୍ସବ ସୁରଭି, ୨୦୨୦ କବିସୂର୍ଯ୍ୟ ରକ୍ତ ଦାନ ସେବା ସଂଘ, ୨୦୨୦ ଆସିକା ମହୋତ୍ସବ, ୨୦୨୧ ରାଜ୍ୟସ୍ତରୀୟ କବି ଓ କଳାକାର ସମାବେଶ (ସମ୍ଭାବନା ସାରସ୍ୱତ ସାଂସ୍କୃତିକ ପରିଷଦ ଓଡିଶା ତରଫରୁ) ଓଡିଶୀ ନୃତ୍ୟ ପାଇଁ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ୨୦୨୧ ଉତ୍କଳ ଦିବସ ସମାରୋହ ଜୟପୁରରେ ପ୍ରଥମ ସ୍ଥାନ, ୨୦୨୧ରେ ସର୍ବ ଭାରତୀୟ ନୃତ୍ୟ ପ୍ରତିଯୋଗିତା, ଖଗଡ଼ପୁରରେ ପ୍ରଥମ, ୨୦୨୧ରେ କଲିକତା ଠାରେ ଅନୁଷ୍ଠିତ ଅନ୍ତର୍ଜାତୀୟ ନୃତ୍ୟ ପ୍ରତିଯୋଗିତାରେ ପ୍ରଥମ ଅଧିକାର କରି ସେ ରାଜ୍ୟ ତଥା ଦେଶ ପାଇଁ ଗୌରବ ଆଣିଥିଲେ । ଏହାଛଡ଼ା ଶୁଭଶ୍ରୀ ଫେବୃଆରୀ ୧୪, ୨୦୨୨ ନୂଆଁଗାଁରେ ଅନୁଷ୍ଠିତ ବ୍ୟାସକବି ଫକୀର ମୋହନ ଜୟନ୍ତୀ, ୨୪ ସେପ୍ଟେମ୍ବର ୨୦୨୨ ବିପଦର ବନ୍ଧୁ ଗଞ୍ଜାମ (blood army) ବ୍ରହ୍ମପୁର ସଂସ୍କୃତି ଭବନ, ୨୫ ସେପ୍ଟେମ୍ବର ୨୦୨୨ ଆସିକା ବ୍ଲକ ଜିଲ୍ଲା ପ୍ରଶାସନ ତରଫରୁ ସ୍ୱାଧୀନତାର ଉଲ୍ଲାସ (ଅହିଂସା ରଥ)ରେ ଭାଗନେଇ ସେ ଓଡିଶୀ

 

ନୃତ୍ୟରେ ସଭିଙ୍କ ମନ ଆଉ ହୃଦୟକୁ ଜୟ କରିପାରିଛନ୍ତି । ପୁଣି ନଭେମ୍ବର ୨୦୨୨ ରାଜ୍ୟ ସ୍ତରୀୟ କଳାକାର ସମାବେଶରେ ଗୁରୁ ଅଭୟ ପରିଡାଙ୍କ ସହ ମହାବାହୁ, ନବଦୁର୍ଗା ଓ ମଙ୍ଗଳା ଚରଣରେ ଓଡିଶୀ ନୃତ୍ୟ ପରିବେଷଣ କରି ସମସ୍ତଙ୍କ କରତାଳି ସାଉଁଟି ଥିଲେ ।

ନିଜକୁ କଳା ପାଖରେ ସମର୍ପିତ କରିଥିବା ଶୁଭଶ୍ରୀ ଆଜି ଜଣେ ଓଡିଶୀ ନୃତ୍ୟାଙ୍ଗନା ଭାବରେ ବୟସ ଠାରୁ ଢେର ଅଧିକ ଅନେକ ସ୍ଥାନରୁ ପୁରସ୍କୃତ ହୋଇ ଆମ ଅଂଚଳ ପାଇଁ ସୁନାମ ଆଣିଛନ୍ତି । ସେ ଭବିଷ୍ୟତରେ ଶାସ୍ତ୍ରୀୟ ନୃତ୍ୟରେ ଦେଶ ବିଦେଶରେ ନିଜକୁ ପ୍ରତିଷ୍ଠିତ କରିବା ସହ ଆମ ଅଞ୍ଚଳ ତଥା ରାଜ୍ୟର ଗୌରବ ଆଣିବାକୁ ନିଜ ଟିକି ମନରେ ଦୃଢ଼ ଆଶା ପୋଷଣ କରିଛନ୍ତି ।

ଶିକ୍ଷକ, ସାନ୍ତରାପଲ୍ଲୀ, ଗଞ୍ଜାମ

ମୋ: ୯୮୭୦୭୩୮୭୩୬

 

# ନାରୀ



ଶୁଭମୟୀ ଷଡ଼ଙ୍ଗୀ

ଦଶହରା ସମୟ, ଏହି ଖରାବେଳଟାରେ ଏମିତି ବସିଥାଏ କେତେବେଳେ ଟିକେ ସଂଧ୍ୟା ହେବ ଏବଂ ମେଢ଼ ଦେଖିବା ପାଇଁ ଯିବି ।

ଖରା ଯାଇ ସଂଧ୍ୟା ମଧ୍ୟ ହୋଇଗଲା ଅଷ୍ଟମୀ ପୂଜା ଥାଏ, ସଂଧ୍ୟା ଆସିଲା ବେଳେ ତା ସହ ବର୍ଷାକୁ ମଧ୍ୟ ସାଙ୍ଗରେ ନେଇ ଆସିଥାଏ । ସଂଧ୍ୟା ଯାଇ ରାତି ମଧ୍ୟ ପଳିଆସିଲା କିନ୍ତୁ ଯାଇପାରିଲିନି ଟିକେ ବୁଲିବା ପାଇଁ, ଲୋକେ ସେହି ବର୍ଷାରେ ମଧ୍ୟ ଯାଆନ୍ତି ଠାକୁରାଣୀଙ୍କ ଦର୍ଶନ ପାଇଁ, ମୁଁ ଏହି ବାଲକୋନୀରେ ବସିଛି ସବୁ ଦେଖୁଥାଏ ହଠାତ୍ କିଛି କଥା ମୁଣ୍ଡକୁ ଆସିଲା, ଏବଂ ନିଜ ଭାବନାରେ ବୁଡ଼ିଗଲି ।

ଆମ ଦଶମ ପରୀକ୍ଷା ଉତ୍ତୀର୍ଣ୍ଣ ପରେ ଯେତେବେଳେ ପାଦ ଦେଲି ପ୍ଲସ୍ ୨ରେ ସେକେଣ୍ଡ ଇୟରରେ ସାହିତ୍ୟ ବହିରେ ଗୋଟିଏ କବିତା ଥିଲା ପିଙ୍ଗଳାର ଅଭିସାର, ପିଙ୍ଗଳା ବେଶ୍ୟା ଥିଲା ସତ କିନ୍ତୁ ଥିଲା ଜଣେ ନାରୀ । ସେ ନିଜେ ଯାଇ ଦେହ ବିକି ନଥିଲା ତା ପାଖକୁ ଆସିଥିଲେ ଏବଂ ଶଯ୍ୟାଭୋଗ କରିଥିଲେ, ପାଖକୁ ଯାଇ ପୁଣି ଫେରିବା ବେଳେ ବେଶ୍ୟାର ଉପାଧି ପ୍ରଦାନ କରାଇ ଦେଇଯାଉଥିଲେ । ସବୁ ପଛରେ ସେ ଜଣେ ନାରୀ, ନାରୀ ଶବ୍ଦକୁ ହିଁ ଭୁଲି ଯାଉଥିଲେ ।

ନାରୀ ଦୁର୍ବଳା କି ସବଳା ସେଥିର ସମ୍ମାନ ପତ୍ର ଚାହେଁନି, କେବଳ

 

ନାରୀ ଜଣେ ନାରୀ ଉପାଧିରେ ଭୂଷିତ ହେଉ କେବଳ ଏୟା ଚାହେଁ । ନାରୀ ପରିସ୍ଥିତି ଅନୁସାରେ ନିଜକୁ ସଜାଇ ଚାଲେ । ନାରୀ ଦୁର୍ବଳା କିମ୍ବା ସବଳା, କଠୋର କିମ୍ବା ଦୟାଳୁ ଦେଖି ଆଗକୁ ଯାଏନି ପ୍ରତି ପରିସ୍ଥିତିରେ ନିଜକୁ ସଜାଏ ଏବଂ ସଦା ସଜାଗ ରଖିଥାଏ । ସମସ୍ତେ କୁହନ୍ତି ଯେ ସେ ନାରୀ, ସେ ଏମିତି ସେ ସେମିତି କିନ୍ତୁ ନାରୀ କେମିତି ନାରୀ କଣ କିଏ ଜଣେ ମଧ୍ୟ ଜାଣିବା ପାଇଁ ଚେଷ୍ଟା କରନ୍ତିନି । ନାରୀ ଅବଶ୍ୟ ଶାନ୍ତ କିନ୍ତୁ ସେହି ନାରୀ ହିଁ ଦିନେ ମା' ଦୁର୍ଗା ସାଜିଥିଲା, ସେହି ନାରୀ ହିଁ ନିଜକୁ ମା' କାଳୀ ରୂପରେ ସଜାଇଥିଲା । ଘର ଚଳାଇବା ପାଇଁ ସବୁ କିଛି ସହିଯାଏ, ଟିକେ ସମ୍ମାନ ଚାହେଁ ସେତକ ମଧ୍ୟ କିଏ ଦେବା ପାଇଁ ଉଚିତ୍ ମନେ କରନ୍ତିନି ।

ନାରୀ ଏକ ସୁନ୍ଦର ସୃଷ୍ଟି ଯାହାକୁ ଆଙ୍କିବା ଅସମ୍ଭବ, ନାରୀ କେବଳ ଅକ୍ଷର ନୁହଁ ମମତାର ଗଭୀରତା, ସ୍ନେହରେ ଭରା ସାଗର ଶାନ୍ତି ଓ ଏକତାର ବାସ୍ତବତା ମଧ୍ୟ, ନାରୀ ତାର ନାମ ପରିବର୍ତ୍ତନ କରିଦିଏ, ଘର ବଦଳାଇ ଅନ୍ୟ ଘରକୁ ଯେଉଁଠି କିଛି ଜାଣିନି କାହାକୁ ଆସି ନିଜକୁ ଭୁଲିଯାଏ, ନିଜ ଶରୀରର ପୀଡ଼ା ଯନ୍ତ୍ରଣା ସବୁ ଭୁଲି ସମସ୍ତଙ୍କ ସୁଖ ମନାସେ । ଝିଅରୁ ବୋହୂ, ବୋହୂ ଠାରୁ ସ୍ତ୍ରୀ, ସ୍ତ୍ରୀ ଠାରୁ ମା', ପୁଣି କାହାର ମା ସମ୍ମାନ ଭାଉଜ ପୁଣି ସବୁ ସମ୍ପର୍କରେ ନିଜକୁ ବାନ୍ଧିଦେଇ ନିଜର ହିଁ ସମର୍ପଣ କରିଦିଏ ସମସ୍ତଙ୍କ ପାଖରେ ।

ନାରୀ ଅର୍ଥାତ୍ ସେ ରୂପ ରଙ୍ଗର ମିଶାଲ ନୁହଁ... ନାରୀଟି ଝିଅ, ଭଉଣୀ, ମାଆ, ସ୍ତ୍ରୀ ପୁଣି ଗୋଟେ ମହିଳା.. ସବୁ ରୂପରେ ବିରାଜମାନ ହୋଇଥାଏ । ତା' ନିଜର ମଧ୍ୟ କିଛି ଇଚ୍ଛା ଥାଏ, ସେ ମଧ୍ୟ ଦୁନିଆ ଠାରୁ ସମ୍ମାନ ଆଶା ରଖିଥାଏ । ନିଜର ଚିନ୍ତାଧାରା ବଦଳେଇବା ଦରକାର୍, ଚେହେରା କିମ୍ବା ଦେହକୁ ଦେଖି ନୁହଁ ମନର ପବିତ୍ରତାରୁ ସଲାମ କରିବା ଉଚିତ୍ । ତା' ଚେହେରା ଦେଖି ଓଲଟା ସିଧା କହିବାକୁ ଆମେ କିଏ ? ?.. ଯେତେବେଳେ ନିଜେ ମାଆ

 

କାଳୀ ମଧ୍ୟ କଳା ରଙ୍ଗର, ତାଙ୍କୁ ତ ପୂଜା କରାଯାଏ ପୁଣି, ତାଙ୍କ ଆଗରେ ସମସ୍ତେ ମୁଣ୍ଡ ନୁଆନ୍ତି । ସେହି ମା' କାଳୀ ଙ୍କ ରୂପ ଏ ସାରା ନାରୀ ସମାଜ, ତେବେ ନାରୀ ଜାତିକୁ ରାୟ ଦେବାପାଇଁ ଏ ସମାଜ କାହିଁ ଆଗେଇ ଆସେ ? ସମ୍ମାନ ଦେଲେ ହିଁ ସମ୍ମାନର ଆଶା ରଖା ଯାଇଥାଏ । ନାରୀ କୌଣସି ଖେଳନା ନୁହଁ, ସେ ମଧ୍ୟ ମଣିଷ ରୂପ ନେଇ ଜନ୍ମ ନେଇଛି ସ୍ୱାଧୀନତାର ସହ ବଞ୍ଚିବାର ତାର ମଧ୍ୟ ଅଧିକାର ଅଛି । ନାରୀଙ୍କୁ ମଣିଷ ଦୃଷ୍ଟିରେ ଦେଖିବା ଉଚିତ୍, ହିଂସ୍ର ଜନ୍ତୁ ଭଳି ନୁହଁ ।।

ଏସବୁ ମୋ ଭାବନା ରାଇଜେ ବୁଡ଼ି ଭାବୁଥିଲି ହିଁ ସେତେବେଳେ ମା ଡାକିଲା ପୁଣି ଏପଟେ ଅନାଏ ସେ କୁହେ ଚାଲେ ଯିବା ମାଙ୍କୁ ଦେଖି ଆସିବା, ଲୋକଙ୍କ ଗହଳି ସେମିତି ହିଁ ଥାଏ ପୁଣି ମନେ ମନେ ହସି କହିଦିଏ ବାସ୍ ମନରେ ନାରୀ ଜାତି ପାଇଁ ସମ୍ମାନ ନଥାଇ ନବରାତ୍ରୀ ପାଳିଲେ ମା ଦୁର୍ଗା କେବେ ଡାକ ଶୁଣିବେନି, କେବଳ ତାଙ୍କ ଜାତିକୁ ତାଙ୍କ ଭଳି ଏହି ୯ ଦିନ ନୁହ ସାରା ବର୍ଷ ସମ୍ମାନ ଦେବା ଦରକାର, ଜଣେ ଜଣେ କରି ସୁଧୁରିଗଲେ ଦୁନିଆ ସୁଧୁରି ଯିବ ଏହି ନାରୀ ଜାତିରୁ ହିଁ ଜନ୍ମ ମିଳିଛି ଏବଂ ଏହି ବସୁନ୍ଧରା ମାର ଦେହ ରେ ହିଁ ମୃତ୍ୟୁ ପରେ ମିଶିଯିବା ରହୁଚେ ମଧ୍ୟ ଭାରତ ମା'ର କୋଳରେ, ଜନ୍ମରୁ ମା ମୃତ୍ୟୁ ପରେ ମଧ୍ୟ ମା, ସେ ସମୟ ମଧ୍ୟରେ ସ୍ତ୍ରୀ, ଭଉଣୀ, ଝିଅ, ସାଙ୍ଗ ରୂପରେ ସମସ୍ତେ ନିଜ ସହ ରହିବେ ନିଜ ଭାବନା ବଦଳାଇଲେ ଆପେ ଆପେ ସବୁ ଠିକ୍ ହେଇଯିବ ମୋ ଦେଶ ସୁଧୁରି ଯିବ ।

ହିଞ୍ଜିଳିକାଟୁ (ଗଞ୍ଜାମ )

 

# ସୃଜନଶୀଳ ମାନବିକତା



ପଙ୍କଜ କୁମାର ପାଣିଗ୍ରାହୀ

ପୃଥିବୀ ପୃଷ୍ଠରେ ଜନ୍ମିତ ସମସ୍ତ ଚରାଚର ଜୀବଜଗତ ଏକ ନିର୍ଦ୍ଧିଷ୍ଟ ସମୟ ପାଇଁ ସୃଷ୍ଟି / ଜନ୍ମ ହୋଇ କୌଣସି ଗୋଟିଏ ସମୟରେ ନିଜସ୍ୱ ହରାଇଥା'ନ୍ତି ଯାହାର ଶରୀର ଏକ ରୂପାନ୍ତରିଣ ନିୟମ ଆଧାରରେ ପ୍ରକୃତିରେ ମିଶିଯାଏ । ତାହା ପୂର୍ବରୁ ସମ୍ପୃକ୍ତ ଜୀବଟି ଆଉ ଏକ ନୂତନ ଜୀବନ ସୃଷ୍ଟି କରିବାର କ୍ଷମତା ରଖିଥାଏ ଯାହା ପୂର୍ବ ସମାପ୍ତି କୌଣସି ଜୀବ ସହିତ କୌଣସି ପ୍ରକର ସିଧା ସଳଖ ସମ୍ପର୍କ ରଖିନଥାଏ । କି'ନ୍ତୁ ପ୍ରାକୃତିକ ନିୟମ ଆଧାରରେ ସେହି ନୂତନ ଜୀବନ ମଧ୍ୟରେ ସୃଷ୍ଟିକର୍ତ୍ତା ତଥା ତାଙ୍କ ପୂର୍ବଜଙ୍କ ଅନେକ ଗୁଣ, ଧର୍ମ, ଲକ୍ଷଣ ପ୍ରସ୍ଫୁଟିତ ହୋଇଥାଏ ଯାହାକୁ ଆମେ ଜିନ୍‌ଗତ ବୋଲି ଜାଣୁ । ଧରାପୃଷ୍ଠରେ ଜନ୍ମ ନେଇଥିବା ଲକ୍ଷ ଲକ୍ଷ ଜୀବଜଗତ ମଧ୍ୟରେ ମଣିଷର ପରିଚୟ ଏକ ଭିନ୍ନ ରୂପରେ ଦେଖିବାକୁ ମିଳୁଛି । ଏକ ଉନ୍ନତ୍ତ ମସ୍ତିଷ୍କର ଗଠନ ତଥା ସ୍ମରଣିକା ଜଡିତ ଭାବନାର ପ୍ରଚୁର ଉତ୍ସ ହେତୁ ମଣିଷ ଏକ ସମାଜ ଗଠନ କରି ସୁରକ୍ଷିତ ରହି ଆନନ୍ଦରେ କାଳାତିପାତ କରିବାରେ ସକ୍ଷମ ହୋଇ ପାରୁଛି । ଅନ୍ୟାନ୍ୟ ଜୀବନ ଜଡିତ ପ୍ରତ୍ୟେକ ପ୍ରାକୃତିକ ସରଂଚନା ଗୁଡିକର ଏକକ ଆକୃତି ମଧ୍ୟରେ ରହିଥିବା ବିଭିନ୍ନ ଗୁଣ, ଧର୍ମ ଜନିତ ପ୍ରଜାତି ଗୁଡିକ ଭଳି ମଣିଷ ସମାଜରେ ମଧ୍ୟ ବିଭିନ୍ନ ଗୁଣ, ଧର୍ମ, ଚରିତ୍ର ପ୍ରବାହିତ ହେଉଛି ।

 

ଦେଖିବାକୁ ମିଳୁଛି ଯାହା ସବୁ କେବଳ ସମ୍ପୃକ୍ତ ମଣିଷର ଚତୁର୍ପାର୍ଶ୍ୱର୍ରେ ରହିଥିବା ପ୍ରକୃତିର ଦେୟ ମାତ୍ର, ସ୍ଥଳ ବିଶେଷକୁ ନେଇ ।

ମଣିଷର ଜ୍ଞାନ, ଚତୁରତା ଇତ୍ୟାଦି ବୃଦ୍ଧି ହେବା ସହିତ କେତେକ ଅମାନୁଷିକ ଆଚରଣ ବୃଦ୍ଧି ହେବାକୁ ଲାଗିଲା ଯେତେବେଳେ ମଣିଷ ଆଧୁନିକତା ଆଡକୁ ମୁଖରିତ ହେଲା । ଇତି ମଧ୍ୟରେ କେତେକ ମଣିଷ ମସ୍ତିଷ୍କରେ ଅନେକାଂଶରେ ଚତୁରତା ବୃଦ୍ଧି ହେଲେହେଁ ଖୁବ୍ କମ୍ ବିଜ୍ଞ ମଣିଷ ଜନ୍ମ ହେଲେ ପୃଥିବୀ ପୃଷ୍ଠରେ । ଦେଖାଗଲା ଯେ ସୃଜନଶୀଳ ମାନବିକ ଚେତନାଶୀଳ ମଣିଷ ମାନେ ସବୁବେଳେ ନିଜସ୍ୱ ସ୍ୱାର୍ଥ ରହିତ ସମାଜର ମଙ୍ଗଳ ଦିଗ କାମନା କରିବା ସହିତ ସେହି ଦିଗରେ କାର୍ଯ୍ୟ ମଧ୍ୟ କରିବା ଆରମ୍ଭ କଲେ । କିନ୍ତୁ ଅଧିକ ମାତ୍ରାରେ ଚତୁର ମଣିଷ ସମାଜରେ ସୃଷ୍ଟି ହୋଇ ସେମାନେ ସବୁବେଳେ ଅସାମାଜିକ, ଅନୈତିକ କାର୍ଯ୍ୟ କରି ସାଧାରଣ ନିର୍ବୋଧଙ୍କୁ ପ୍ରତାରିତ କରି ନିଜସ୍ୱ ସ୍ୱାର୍ଥ ହାସଲ କରିବା ଲକ୍ଷ୍ୟ ରଖିଲେ । ଅଧୁନା ସେହି ସ୍ୱାର୍ଥାନ୍ଧଙ୍କ ସଂଖ୍ୟା ଅଗଣିତ ସଂଖ୍ୟାରେ ପହଂଚି ସେମାନେ ସମାଜର ଗୋଟିଏ ଗୋଟିଏ କଳଙ୍କ ଭଳି ଦଣ୍ଡାୟମାନ ବିଶ୍ୱବ୍ୟାପୀ ସବୁ ସ୍ଥାନରେ । ଅନେକ ବର୍ଷର କ୍ରମ ପରିବର୍ତ୍ତିତ / ବିକଶିତ ଯୁକ୍ତାତ୍ମକ ଜ୍ଞାନକୁ ସଂକୁଚିତ କରି ଅଜ୍ଞାନ ଚତୁର ଗୋଷ୍ଠୀ ପୁନର୍ବାର ମଣିଷ ସମାଜକୁ ଅଜ୍ଞାନତାର ଅନ୍ଧକାର ମୁଖକୁ ଠେଲିଦେଇ ନିଜସ୍ୱ ସ୍ୱାର୍ଥ ହାସଲ କରିବା ଲକ୍ଷରେ କେବଳ ବିପରୀତମୁଖୀ କୁହେଳିକା ସୃଷ୍ଟି କରୁଥିବା ବିଷୟ ବୁଝନ୍ତି ପ୍ରାୟତଃ କେତେକ ଜ୍ଞାନୀ, ଗୁଣି ଲୋକ, କିନ୍ତୁ ଅଧିକାଂଶ ସେମାନଙ୍କ କପଟ ପସାର ଜ୍ୱାଳାରେ ପ୍ରତାରିତ, ନିଷ୍ପେସିତ । ତେଣୁ ରୋମ୍ୟ ରମଣୀ ଜନ୍ମଦାତ୍ରୀ ପୃଥିବୀ ସମୟ ପୂର୍ବରୁ ମଣିଷକୁ ବିଲୁପ୍ତ ହେବାର ଦେଖିବାକୁ ଅପେକ୍ଷା କରିଛି । ଏହା କେବଳ ହାତଗଣତି କେତେକ ଅଜ୍ଞାନ ଚତୁର କେଳେଙ୍କାରୀ ମଣିଷଙ୍କ ପ୍ରତାରଣା ଏବଂ

 

ସ୍ୱାର୍ଥ ଜଡିତ ଲକ୍ଷ । ତେଣୁ ସାଧାରଣ ନିର୍ବୋଧ ମଣିଷ ସମୂହ ନିଜକୁ ସେମାନଙ୍କ ସହିତ ଅଙ୍ଗୀକାରବଦ୍ଧ, ସମାନ୍ତରାଳ ନକରି ସତ୍ୟର ପଥ ଉନ୍ମୋଚନ, ଅନୁସରଣ କରିବା ଲକ୍ଷ ରଖିବା ଏକାନ୍ତ ଆବଶ୍ୟକ ।

ଆସନ୍ତୁ ସମସ୍ତେ ମିଳିମିଶି ସେହି ଅଜ୍ଞାନ ଚତୁରଙ୍କ ଅନୈତିକ, ଅସାମାଜିକ, ଅମାନୁଷିକ ଆଚରଣ ଗୁଡିକୁ ପ୍ରତ୍ୟାଖ୍ୟାନ କରି ଏକ ଶାନ୍ତ ସମୃଦ୍ଧ ମଣିଷ ସମାଜ ଗଠନ କରିବା । ସମସ୍ତେ ଆଜିଠାରୁ ଶପଥ ନେବା ଯେ ଅସତ୍ୟକୁ ପ୍ରତ୍ୟାଖ୍ୟାନ କରି ସତ୍ୟର ପଥରେ ·ଲିବା ଶିଖିବା । ଧର୍ମ, ସମ୍ପ୍ରଦାୟ, ରଙ୍ଗ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକ ହୋଇ ଜଣେ ଅନ୍ୟକୁ ସାହାଯ୍ୟ, ପ୍ରେମ, ଆନନ୍ଦ ବାଣ୍ଟି ନିଜେ ମଧ୍ୟ ସୁଖ ଶାନ୍ତିରେ ବଂଚିବା ଶିକ୍ଷା କରିବା । ମିଥ୍ୟାବାଦୀ ବ୍ୟବସାୟୀ, ରାଜନେତା, ଧର୍ମଗୁରୁ, ସମୂହଙ୍କୁ ପ୍ରତ୍ୟାଖ୍ୟାନ କରି ପୃଥିବୀ ପୃଷ୍ଠରେ ସମଗ୍ର ମଣିଷ ସମାଜର ସୀମା ତୁଟାଇ ଏକ ମନ ଏକ ପ୍ରାଣ ହୋଇ ଶାନ୍ତିର ବାର୍ତ୍ତାବହ ହେବା । ଏହି ପ୍ରେରଣା ଜଣେ ଅନ୍ୟ ଜଣକୁ ବିତରଣ କରି ପ୍ରକୃତିର ସମୟ ପୂର୍ବରୁ ମଣିଷ ସମାଜକୁ ବିଲୀନ ହେବା ଦିଗରୁ ରକ୍ଷା କରିବା । ଅଧିକନ୍ତୁ ସମସ୍ତଙ୍କୁ ସମାନ ବଂଚିବାର ସୁଯୋଗ ସୃଷ୍ଟି କରି ମଣିଷକୁ ମଣିଷର ପରିଚୟ ସୃଷ୍ଟି କରିବାରେ ବ୍ରତୀ ହେବା । ଏହି ହେଉଛି ଆଜିର ଆହ୍ୱାନ ଯେଉଁଥିରେ ସମସ୍ତେ ଅନୁପ୍ରାଣିତ ଅଗ୍ରସର ହୋଇ ଏକ ସୃଜନଶୀଳ ମାନବିକତାର ପରିଚୟ ପ୍ରଦାନ କରିବା... ? !

ସୋସିଆଲ ଫୋରମ (ଭାରତ),
ଛତ୍ରପୁର, ଗଂଜାମ-୭୬୧୦୨୦.
ଦୂରଭାଷ.: ୯୪୩୭୩୨୪୯୯୭.

 

# ଡ଼. ସୀତାକାନ୍ତ ମହାପାତ୍ର



ଅସିତ ମହାନ୍ତି

'ସମୟ୍ ଏବଂ ଶବ୍ଦର କବି' ଡ଼. ସୀତାକାନ୍ତ ମହାପାତ୍ର

ଓଡିଆର ପ୍ରସିଦ୍ଧ କବି ସୀତାକାନ୍ତ ମହାପାତ୍ର (ଜନ୍ମ: ୧୭ ସେପ୍ଟେମ୍ବର ୧୯୩୭ ) ଜଣେ ଓଡିଆ ଲେଖକ । ସେ ଓଡ଼ିଶାର ମହାନ ମହାନଦିର ଏକ ଉପନଦୀ ଚିତ୍ରୋତପଳା କୂଳରେ ଅବସ୍ଥିତ ମାହାଙ୍ଗା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କୁ ୧୯୯୩ରେ ଜ୍ଞାନପୀଠ ପୁରସ୍କାର ପ୍ରଦାନ କରାଯାଇଥିଲା । ସାହିତ୍ୟ ଓ ଶିକ୍ଷା କ୍ଷେତ୍ରରେ ତାଙ୍କୁ ଭାରତ ସରକାର ୨୦୦୩ରେ ପଦ୍ମ ଭୂଷଣ ପ୍ରଦାନ କରିଥିଲେ । ସେ ୧୯୬୧ ମସିହାରେ ପ୍ରଥମ ଓଡିଆ ଭାବରେ UPSC ପରୀକ୍ଷାରେ ଭାରତରେ ପ୍ରଥମ ସ୍ଥାନରେ ରହିଥିଲେ ଏବଂ ଗୃହ ସଚିବ, ଓଡ଼ିଶା ସରକାର, ସଚିବ, ସଂସ୍କୃତି ମନ୍ତ୍ରଣାଳୟ, ଭାରତ ସରକାରଙ୍କ ଅନେକ ପ୍ରମୁଖ ପଦବୀରେ ଅବସ୍ଥାପିତ ହୋଇଥିଲେ । ୟୁନେସ୍କୋର ସାଂସ୍କୃତିକ ବିକାଶ ପାଇଁ ବିଶ୍ୱ ଦଶନ୍ଧିର ଅଧ୍ୟକ୍ଷ (୧୯୯୪–୧୯୯୬) ମଧ୍ୟ ଥିଲେ । ଆଜି ବାସ୍ତବତା ଏବଂ ଅନୁଭବର ବିରଳ ମିଶ୍ରଣରୁ ସୃଷ୍ଟି ହୋଇଥିବା କବିତାର କବି ଡକ୍ଟର ସୀତାକାନ୍ତ ମହାପାତ୍ରଙ୍କ ଜନ୍ମଦିନ । ହିନ୍ଦୀ ଜଗତରେ ଜଣାଶୁଣା ଅନ୍ୟ ଭାଷାର କବିମାନଙ୍କ ମଧ୍ୟରେ ଓଡିଆର ଏହି ଗୁରୁତ୍ୱପୂର୍ଣ୍ଣ ଦସ୍ତଖତରେ ସ୍ଥାନ ଅସୀମ ଅଟେ । ଡ଼. ନାମବର ସିଂ ତାଙ୍କୁ 'ସମୟ୍ ଏବଂ ଶବ୍ଦର କବି'

 

ବୋଲି କହିଛନ୍ତି । ତାଙ୍କ ଅନୁଯାୟୀ, ସମୟକୁ ଶବ୍ଦରେ ଏବଂ ଶବ୍ଦକୁ ସମୟରେ ପରିଣତ କରିବାର କବିଙ୍କର କାବ୍ୟ ସାଧନା ଅଟେ, ଯାହାର ଚରମ ସମାପ୍ତି ବୋଧହୁଏ ଏକ ନୂତନ ଶବ୍ଦହୀନତା ଡକ୍ଟର ନାମବର ସିଂ କବିଙ୍କ ପୁସ୍ତକ 'ତିରିଶ କବିତା ବର୍ଷ'ର ଭୂମିକା ଲେଖିବା ବେଳେ ଡକ୍ଟର ସୀତାକାନ୍ତଙ୍କ ଶବ୍ଦ-ଚିନ୍ତାର ରହସ୍ୟ ଜାଣିଥିଲେ - "ଯାହାର ବିକଳ୍ପ ନାହିଁ, ତାହା ହେଉଛି କବିତାର ସଂକଳ୍ପ । କବି ଯାହା ଖୋଜୁଛନ୍ତି ତାହା ହେଉଛି ସମାନ ଶବ୍ଦ - ଆରମ୍ଭ ଶବ୍ଦ, ଅଭିଜ୍ଞତାର ମୂଳରେ ଥିବା ଶବ୍ଦ । ଶବ୍ଦ ପାଇଁ ସୀତାକାନ୍ତଙ୍କ ଚିନ୍ତାର ରହସ୍ୟ ଏହା କି ? କିଏ ଜାଣେ ? କବି ବ୍ୟତୀତ କିଏ ଜାଣେ ଯେ ଶେଷରେ ଶବ୍ଦଗୁଡ଼ିକ ହିଁ ରହିଯାଏ । ଶବ୍ଦକୁ ଅକ୍ଷର କୁହାଯାଇଛି ଢ ସମୟର କଣ ଅଛି ? ସେ ଆସେ ଏବଂ ଚାଲିଯାଏ । କାହାର ସାହସ ଅଛି ତାକୁ ଧରି ରଖିବାପାଇଁ ? ଏହି କାରଣରୁ କବି ନିଜ ସମୟକୁ ଶବ୍ଦରେ ପରିଣତ କରିବାରେ ଲାଗିଥାନ୍ତି ?" ବାସ୍ତବତା ଏବଂ ଅଭିଜ୍ଞତାର ଏକାକୀ ମିଶ୍ରଣରୁ ସୀତାକାନ୍ତଙ୍କ କବିତାର କବିତା ଜଗତ ସୃଷ୍ଟି ହୋଇଛି । ତାଙ୍କ କବିତାର ସାଂସ୍କୃତିକ କ୍ଷେତ୍ର ହେଉଛି ତାଙ୍କ ଅଭିଜ୍ଞତାର ଫଳ । ଅତୀତର ଝରକା ଯାହା ସହିତ ସେ ନିଜ କବିତାରେ ସହଜରେ ପ୍ରକାଶ କରିଥିଲେ, ଯେତେବେଳେ ସେ ଗାଁର ଫୁଟପାଥ, ପୋଖରୀ, ନଦୀ, ଘର ମନ୍ଦିର, ସୂର୍ଯ୍ୟୋଦୟ, ସନ୍ଧ୍ୟା ଏବଂ ମାନବିକ ସମ୍ପର୍କ ଇତ୍ୟାଦି ଉପରେ ନଜର ରଖନ୍ତି, ଏହା ଅନାୟାସରେ ପାଠକମାନଙ୍କୁ ବାନ୍ଧି ରଖିଥାଏ । ଏହି ପ୍ରାକୃତିକ ଜିନିଷ ଗୁଡିକର ବର୍ଣ୍ଣନା ପାଠକର ଅନ୍ତରମନକୁ ଛୁଇଁଥାଏ, କାରଣ ଏହା କାଳ୍ପନିକ ନୁହେଁ । ଡକ୍ଟର ସୀତାକାନ୍ତ ମହାପାତ୍ରଙ୍କ କବିତା ଜଗତ (କାବ୍ୟ ସଂସାର) ହିନ୍ଦୀ ପାଠକମାନଙ୍କ ପାଇଁ ସମ୍ପୂର୍ଣ୍ଣ ପରିଚିତ । ତାଙ୍କୁ ଓଡିଆରେ ଯେତିକି ସମ୍ମାନ ପ୍ରାପ୍ତ, ସେତିକି ହିନ୍ଦୀରେ ମଧ୍ୟ ତାଙ୍କୁ ସମ୍ମାନିତ କରାଯାଏ । ବିଶ୍ୱର ଅନେକ ଭାଷାରେ ତାଙ୍କର ରଚନାଗୁଡ଼ିକର ଅନୁବାଦ କବିତାର ଯୋଗାଯୋଗତା

 

ଏବଂ ଆଜିର ପରିବର୍ତ୍ତନ କାଳରେ କବିତାର ଗମ୍ଭୀର ପ୍ରକୃତି ଏବଂ ଅର୍ଥକୁ ଗ୍ରହଣ କରେ । ସୀତାକାନ୍ତ ମହାପାତ୍ରଙ୍କ ଲେଖନୀ ଆଜି ପ୍ରମାଣିତ କରିଛି ଯେ କବିର ପ୍ରାକୃତିକ ଏବଂ ସତ୍ୟତାର ରଚନା କେବଳ ଗୋଟିଏ ଭାଷା ଏବଂ ଦେଶରେ ବାନ୍ଧି ହୋଇ ରହି ପାରେନା, ଏହା ସୀମାର ଛାତି ଚିରି ବାହାରକୁ ଚାଲିଯାଏ ଏବଂ ସତ୍ୟତାକୁ ପ୍ରମାଣିତ କରେ । ସୀତାକାନ୍ତ ମହାପାତ୍ର ଜଣେ ଆଧୁନିକ କବି - ଶିଳ୍ପରେ ମଧ୍ୟ, ପାଠ୍ୟରେ ମଧ୍ୟ, କିନ୍ତୁ ପରମ୍ପରା ସହିତ ମିଳିତ । ପରମ୍ପରାର ଗ୍ରହଣ, ଏହାର ପ୍ରକୃତି-ବିକୃତି ଏବଂ ବର୍ତ୍ତମାନର ଜଟିଳତା ବିଷୟରେ ବିସ୍ତୃତ ଆଲୋଚନାରେ ଏଥିରୁ ଉତ୍ପନ୍ନ ସମ୍ପଦର ବ୍ୟବହାର, ଡକ୍ଟର ସୀତାକାନ୍ତଙ୍କ କବିତାର ମୌଳିକ ବୈଶିଷ୍ଟ୍ୟ । ଆଧୁନିକତା ପରମ୍ପରା ସହିତ ଅର୍ଥପୂର୍ଣ୍ଣ ଭାବରେ ଏକୀକୃତ ହୋଇ ଏକ ନୂତନ ଅଭିବ୍ୟକ୍ତିର ପୃଷ୍ଠଭୂମି ସୃଷ୍ଟି କରେ । ଏହି ସମନ୍ୱୟ କେବଳ ଏହି କବିର ଭାବପ୍ରବଣ ଏବଂ ବୌଦ୍ଧିକ ସ୍ତରରେ ନୁହେଁ, ବରଂ ଏହା ତାଙ୍କ ସମଗ୍ର ସୃଷ୍ଟି ଏବଂ ବ୍ୟକ୍ତିତ୍ୱରେ ମଧ୍ୟ ସହଜରେ ପ୍ରତିଫଳିତ ହୋଇଥାଏ । ପରମ୍ପରା ଏବଂ ଆଧୁନିକତା ମଧ୍ୟରେ ସମ୍ପର୍କକୁ ବ୍ୟାଖ୍ୟା କରି ଡକ୍ଟର ସୀତାକାନ୍ତ କୁହନ୍ତି – "ପରମ୍ପରା ରକ୍ତରେ ଦ୍ରବୀଭୂତ ଥାଏ, ଆଖି ଏବଂ କାନ ସମାନ ପଦ୍ଧତି ସହିତ ଦେଖେ, ମନ ନୂତନ ନିୟମ ସହିତ ଦେଖିବା ଶିଖେ, ବୁଝେ । ଅନେକ କିଛି ମଧ୍ୟ ବୁଝେ ନାହିଁ । ସେହି ଟେନସନ, ଦ୍ୱନ୍ଦ୍ୱ, ପ୍ରତିବାଦର ନୂତନ ପରମ୍ପରା ଏବଂ ମୁଁ ଏହାକୁ କବିତାରେ ଟାଣି ନିଏ । ବାସ୍ତବରେ, ପରମ୍ପରା ଏକ ନିର୍ଦ୍ଦିଷ୍ଟ ବିନ୍ଦୁ ନୁହେଁ । ଏହା ଇତିହାସର କାରାଗାର ନୁହେଁ । ବାସ୍ତବତା ଦେଖିବାର କ୍ଷମତା ପରମ୍ପରାରୁ ଆସିଥାଏ, ପ୍ରକୃତ ଆଧୁନିକତା ହେଉଛି ପରମ୍ପରାର ସର୍ବଶେଷ ରୂପ, ଏହାର ଏକ ନୂତନ ରୂପ ଅଛି, ଏହା ଏକ ଆତ୍ମିକ ବିବର୍ତ୍ତନ "(ଭାରତୀୟ ସାହିତ୍ୟିକଙ୍କ ସହ ସାକ୍ଷାତକାର: ଡ ରଣବୀର ରାଙ୍ଗ୍ରା) । ସମସାମୟିକ ଭାରତର ଅନ୍ୟତମ

 

ସଫଳ ଏହି କବି କବିତାକୁ ଏକ ନୂତନ କବିତା ଚେତନା ଏବଂ ନୂତନ ସମ୍ଭାବନା ଦେଇଛନ୍ତି । ସେ ପରମ୍ପରା ଏବଂ ଆଧୁନିକତାର ଏକ ଅର୍ଥପୂର୍ଣ୍ଣ ମିଶ୍ରଣ କରିଛନ୍ତି । ସେ ଜଣେ କାଳଜୟୀ କବି ଯିଏ ନିଜ କବିତାରେ ମନୁଷ୍ୟର ଗଭୀର ଆନନ୍ଦକୁ ଅନୁସନ୍ଧାନ କରନ୍ତି, ଦୁଃଖ ଏବଂ ଯନ୍ତ୍ରଣାରେ ମଧ୍ୟ ପାରମ୍ପାରିକ ପ୍ରତୀକ ବ୍ୟବହାର କରି ଜୀବନର ଏକ ଇନ୍ଦ୍ରଧନୁ ପରିମାପକୁ ପ୍ରକାଶ କରନ୍ତି ।ମହାପାତ୍ରଙ୍କ କବିତାଗୁଡ଼ିକ ପ୍ରକୃତି ଏବଂ ସଂସ୍କୃତି ସହିତ ଜଡିତ କବିତା ଯାହା ଅବଚେତନାକୁ ଥରାଇ ଦିଏ । ତାଙ୍କ ଦ୍ୱାରା ମନୋନୀତ ପ୍ରତୀକ ଏବଂ ପ୍ରତିଛବି ଗୁଡ଼ିକ ସମୁଦ୍ର ନିକଟରେ ବିକଶିତ ହୋଇଛି । ସମୁଦ୍ର ନିକଟରେ ଥିବା ପରିବେଶ ତାଙ୍କ କବିତାରେ ଜୀବନ ଏବଂ ମୃତ୍ୟୁର ଅନନ୍ତ ଅନୁଭବକୁ ଯୋଗାଯୋଗ କରେ । ଆକାଶ, ଅନ୍ଧକାର, ପ୍ରଭାତ, ସନ୍ଧ୍ୟା, ସୂର୍ଯ୍ୟାସ୍ତ, ମୃତ୍ୟୁ, ସମୁଦ୍ର, ଭ୍ରମଣ, ଉପକୂଳ ଦିଗ ଇତ୍ୟାଦି ଶବ୍ଦଗୁଡ଼ିକ ତାଙ୍କ କବିତାରେ ବାରମ୍ବାର ଆସେ । ତାଙ୍କ କବିତା ପାଠ କରିବାବେଳେ ଏହା ହୃଦୟଙ୍ଗମ ହୁଏ ଯେ କବିତାକୁ ବୁଝିବା ପାଇଁ ପାଠକ ବେଳେବେଳେ ଅଭିଜ୍ଞତା ଆବଶ୍ୟକ କରନ୍ତି, କେବଳ ନୀତିଗୁଡିକର ବୁଝାମଣା ଏବଂ ଭାଷା ଉପରେ ଭଲ ଦାଖଲ ଥିବା କାମ କରେ ନାହିଁ । ଯେପରି ବର୍ଷା ଋତୁରେ ଘାସର ହଳଦିଆ ଫୁଲ ଉତ୍ପନ୍ନ ହୁଏ, ସେହିଭଳି ଏହି କବିତା ସଂଗ୍ରହର କବିତାରେ, ସେମାନଙ୍କର ବ୍ୟକ୍ତିଗତ ଜୀବନ, ଓଡିଆ ସଂସ୍କୃତିରେ ପରିପୂର୍ଣ୍ଣ । ବୋଧହୁଏ ଏହି କାରଣରୁ, ତାଙ୍କ କବିତା ବେଳେବେଳେ ପାଠକଙ୍କ ପାଇଁ ଅତ୍ୟଧିକ ବ୍ୟକ୍ତିଗତ କବିତା ଅନୁଭବ କରିପାରନ୍ତି । ସମତଳ ପୃଥିବୀର ସାହିତ୍ୟ ଏବଂ ସମୁଦ୍ର -ମରୁଭୂମିର ସାହିତ୍ୟ ମଧ୍ୟରେ ଥିବା ପାର୍ଥକ୍ୟ ମହାପାତ୍ରଙ୍କ କବିତା ପଢିବା ସମୟରେ ପାଠକ ଅନୁଭବ କରନ୍ତି ।ସେ ଅନେକ ଅନୁବାଦ ବ୍ୟତୀତ ୧୫ ରୁ ଅଧିକ କବିତା ସଂଗ୍ରହ, ୫ ଟି ପ୍ରବନ୍ଧ ସଂଗ୍ରହ, ଏକ ଭ୍ରମଣ, ୩୦ ରୁ ଅଧିକ ଚିନ୍ତାଧାରା କାର୍ଯ୍ୟ ପ୍ରକାଶ କରିଛନ୍ତି ।

 

ତାଙ୍କର କବିତା ସଂଗ୍ରହ ଅନେକ ଭାରତୀୟ ଭାଷାରେ ପ୍ରକାଶିତ ହୋଇଛି । ତାଙ୍କର ଉଲ୍ଲେଖନୀୟ କାର୍ଯ୍ୟଗୁଡ଼ିକ ହେଉଛି ଶବ୍ଦର ଆକାଶ (୧୯୭୧) , ସମୁଦ୍ର (୧୯୭୭) ଏବଂ ଅନେକ ଶରତ (୧୯୮୧) । ଏହି କବିତାଗୁଡ଼ିକ କବିଙ୍କ ଜାତୀୟତା, ଗୋପନୀୟତା ଏବଂ ସଂସ୍କୃତିର ତାନା- ବାନାକୁ ଅନୁଭୂତି କରାଏ । ସମାଜ କୌଣସି କାର୍ଯ୍ୟରୁ ଯାହା ଖୋଜେ, ଏହାର ଆବଶ୍ୟକତା, ପ୍ରୟାସ ଏବଂ ଦୂରଦୃଷ୍ଟି ଉପରେ ନିର୍ଭର କରେ । ସୀତାକାନ୍ତ ମହାପାତ୍ରଙ୍କ କବିତା ଗୁଡ଼ିକରେ ସମାଜ ପ୍ରତି ଏକ ବଡ଼ ଆକାରରେ ଅନୁଭବ ହୋଇଥିବା ବ୍ୟକ୍ତିଗତ ବ୍ୟଥା ଏବଂ କବିତାରେ ଅବଗତ ଚେତନାରେ ଚାଲିଥିବା କାର୍ଯ୍ୟକଳାପକୁ ପ୍ରକାଶ କରିବାର ଏକ ଶକ୍ତିଶାଳୀ ମାଧ୍ୟମ ହୋଇଯାଏ । ଏହି ପ୍ରକ୍ରିୟାରେ ସେ ବହୁତ ଯତ୍ନବାନ । ଏହି ସତର୍କତା ମହାପାତ୍ରଙ୍କୁ ଜଣେ ମହାନ କବି କରିଥାଏ । ତାଙ୍କ ଜନ୍ମଦିନରେ ତାଙ୍କୁ ଶ୍ରଦ୍ଧା ଏବଂ ସମ୍ମାନ, ସେ ଦୀର୍ଘଜୀବୀ ହୁଅନ୍ତୁ ।

ସୁଜନପୁର, ଯାଜପୁର
୯୩୪୮୭୬୩୮୧୨

 

# ଉତ୍କଳ ଭାରତୀ



ପ୍ରହ୍ଲାଦ ସାହୁ

ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ

ଡା. କୁନ୍ତଳା କୁମାରୀ ସାବତ ଏକା ଧାରରେ ଓଡ଼ିଶାର ପ୍ରଥମ ଡାକ୍ତର, କବୟିତ୍ରୀ, ଲେଖିକା, ଔପନ୍ୟାସିକା ଏବଂ ସମ୍ପାଦିକା ଥିଲେ । ସେ ଜାତୀୟ ଆନ୍ଦୋଳନର ପୁରୋଧା ଓ ସମାଜସେବୀ ଥିଲେ । ଖୋର୍ଦ୍ଧାର ବିପ୍ଳବୀ ଜୟୀ ରାଜଗୁରୁ ଏବଂ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଆଦର୍ଶ ଓ ବିଦ୍ରୋହରେ ସେ ଅନୁପ୍ରାଣିତ ହୋଇଥିଲେ । ଭାରତ ସ୍ୱାଧୀନତା ପାଇଁ ଯେତେବେଳେ ବ୍ରିଟିଶ ଶାସକ ବିରୁଦ୍ଧରେ ଲଢୁଥିଲା ସେହି ସମୟରେ ଓଡ଼ିଶାରେ ଯେଉଁ କେତେଜଣ ନାରୀ କବିଙ୍କ ଆବିର୍ଭାବ ହୋଇଥିଲା ସେମାନଙ୍କ ମଧ୍ୟରେ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ଅନ୍ୟତମ ଥିଲେ ।

୧୯୨୫ ମସିହାରେ ମହିଳା ବନ୍ଧୁ ସମିତି ତାଙ୍କର ଓଡିଆ ସାହିତ୍ୟର ଅନବଦ୍ୟ ସୃଷ୍ଟି ପାଇଁ ତାଙ୍କୁ "ଉତ୍କଳ ଭାରତୀ" ନାମରେ ସମ୍ମାନିତ କରିଥିଲେ । ସେ ଉତ୍କଳ ଭାରତୀ ଉପାଧି ସହ ଅଖିଳ ଭାରତୀୟ ଆର୍ଯ୍ୟ ସମାଜ ଦ୍ୱାରା "ଭାରତୀ ଭୂଷଣ" ଉପାଧିରେ ଭୂଷିତ ହୋଇଥିଲେ । ଭାଷାର ଉନ୍ନତି ପାଇଁ ଦିଲ୍ଲୀରେ ସେ ଭାରତୀ ତପୋବନ ସଂଘ ନାମରେ ଏକ ସମିତି ମଧ୍ୟ ଗଢିଥିଲେ ।

 

ରେଭେନ୍‌ସା ବାଳିକା ବିଦ୍ୟାଳୟର ଶିକ୍ଷକ-ଶିକ୍ଷୟିତ୍ରୀ ଓ ସହପାଠୀମାନଙ୍କ ଠାରୁ ବିଦାୟ ନେବା ଅବସରରେ କୁନ୍ତଳା କୁମାରୀ ତାଙ୍କ ସ୍ୱରଚିତ କବିତା ମାଧ୍ୟମରେ ସମସ୍ତଙ୍କ ଠାରୁ ଅଶ୍ରୁଳ ବିଦାୟ ନେଇଥିଲେ । ଏହା ଥିଲା ତାଙ୍କର ପ୍ରଥମ ପ୍ରକାଶ୍ୟ କବିତାର କିଛି ଅଂଶ ।

ହେ ଭଗିନୀକୂଳ କନକ କୋମଳ ସମ ତୁମେ ଲୋଭନୀୟା,
ଏ ଦିନା ସଖୀରେ ବିଦ୍ୟା ପ୍ରତିଭାରେ କରିଥିବ ଚିରଦୟା ।
ତୁମ ସ୍ନେହ ସ୍ମୃତି ଅନ୍ତରେ ସାଇତି ବିଦାୟ ନେଉଛି ଆଜି,
ଉତ୍କଳ ଜନନୀ ଯଶୋଗୀତେ ଶାଣି ଏ ଜୀବନ ହେଉ ମାଜି ।

ତାଙ୍କ ପୂର୍ବରୁ କୌଣସି ଓଡ଼ିଆ ଲେଖିକା ଉପନ୍ୟାସ ଲେଖି ନଥିଲେ । ତାଙ୍କ ଉପନ୍ୟାସଗୁଡ଼ିକ ମଧ୍ୟରେ ନଅତୁଣ୍ଡୀ, କାଳୀବୋହୂ, ରଘୁ ଅରକ୍ଷିତ, ଭ୍ରାନ୍ତି ଏବଂ ପରଶମଣି ଅନ୍ୟତମ । ସେ "ମହାବୀର, ଜୀବନ ଓ ନାରୀ ଭାରତୀ" ଭଳି ହିନ୍ଦୀ ପତ୍ରିକାମାନଙ୍କର ସମ୍ପାଦିକା ଥିଲେ ।

ସେ ଓଡ଼ିଆ ଏବଂ ହିନ୍ଦୀ ଭାଷା ସାହିତ୍ୟରେ ଦକ୍ଷତା ଅର୍ଜନ କରିଥିଲେ ଓ ଭଲଭାବେ ଲେଖାଲେଖି କରିପାରୁଥିଲେ । ତାଙ୍କ ରଚିତ ଓଡିଆ କବିତାଗୁଡ଼ିକ ମଧ୍ୟରେ ଅଞ୍ଜଳି, ଉଚ୍ଛ୍ୱାସ, ସ୍ଫୁଲିଙ୍ଗ, ଅର୍ଚ୍ଚନା, ଆହ୍ୱାନ, ପ୍ରେମ ଚିନ୍ତାମଣି, ଗଡ଼ଜାତ କୃଷକ, କୋଟି କୋଟି କଣ୍ଠେ ଆଜି, ଅବହେଳିତ ଦେଶ, ପୂଜା, ଅଭିଶପ୍ତର ଅଭିମାନ, ବନଫୁଲ ଏବଂ ଉଦ୍ୟାନ କୁସୁମ ଆଦି ପ୍ରମୁଖ କବିତା ବହୁତ ପ୍ରସିଦ୍ଧି ଲାଭ କରିଥିଲା ।

ପୁରୀ ଜିଲ୍ଲାର ପିପିଲି ନିକଟସ୍ଥ ଦାଣ୍ଡମୁକୁନ୍ଦପୁର ଗ୍ରାମର ବ୍ରାହ୍ମଣ ବଂଶୀୟ ବ୍ରଜବନ୍ଧୁ ସାବୁତଙ୍କର କୌଣସି ସନ୍ତାନ ସନ୍ତତି ନଥିବାରୁ ସେ ପୁରୀ କୁଲେଇବେଣ୍ଟ ସାହିର ବିଦ୍ୟାଧର ଦାଶଙ୍କ ଠାରୁ ପୁଅଟିଏ ଆଣି ପୋଷ୍ୟ ପୁତ୍ର କରିଥିଲେ । ସେହି ପୁତ୍ର ସନ୍ତାନର ନାମ ଶ୍ୟାମ

 

ରତନ ଥିଲା । ଶ୍ୟାମରତନଙ୍କୁ ଯେତେବେଳେ ୧୦ ବର୍ଷ ବୟସ ହୋଇଥିଲା ତାଙ୍କ ପାଳିତ ପିତାମାତାଙ୍କ ମୃତ୍ୟୁ ହେବାରୁ ସେ ଅନ୍ୟର ଆଶ୍ରୟରେ ବଞ୍ଚିଥିଲେ । ସେମାନେ ଶ୍ୟାମ ରତନର ପାଠ ପଢ଼ାରେ ସହଯୋଗ ନକରି ହାଟ ବଜାର କରିବା ପାଇଁ ପିପିଲି ପଠାଉଥିଲେ ।

ଦିନେ ଶ୍ୟାମରତନ ପିପିଲି ହାଟରୁ ଫେରୁଥିବା ବେଳେ ପାଦ୍ରୀ ଜେ.ମିଲର୍ ସବୁକଥା ତାଙ୍କ ଠାରୁ ଶୁଣିବା ପରେ ତାଙ୍କ ପାଖରେ ଅଟକାଇ ରଖିଲେ । ଶ୍ୟାମରତନଙ୍କ ପରିବାର ଲୋକ ପାଦ୍ରୀଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ ଶ୍ୟାମରତନଙ୍କୁ ଛାଡିଲେ ନାହିଁ ଏବଂ ପରେ ପାଦ୍ରୀ ତାଙ୍କୁ ବାଧ୍ୟ କରି ଖ୍ରୀଷ୍ଟଧର୍ମରେ ପରିବର୍ତ୍ତିତ କରିଥିଲେ । ପରବର୍ତ୍ତୀ ସମୟରେ ପାଦ୍ରୀଙ୍କ ଉଦ୍ୟମରେ ଖୋର୍ଦ୍ଧାର ମାଧବୀଙ୍କ ସହ ତାଙ୍କର ବିବାହ ହୋଇଥିଲା । ଶ୍ୟାମରତନ କୁନ୍ତଳା କୁମାରୀ ସାବତଙ୍କ ପିତାମହ ଥିଲେ ।

୧୮୭୩ ମସିହାରେ ଶ୍ୟାମରତନ ଓ ମାଧବୀଙ୍କ ଔରଷରୁ ପୁତ୍ର ସନ୍ତାନଟିଏ ଜନ୍ମ ଗ୍ରହଣ କରିଥିଲା ଯାହାର ନାମ ରଖାଯାଇଥିଲା ଦାନିଏଲ୍ । ପ୍ରଥମେ ସାବୁତ ବଦଳରେ ସାବତ ସଂଜ୍ଞା ଦାନିଏଲ୍ ବଦଳେଇଥିଲେ ।

ଦାନିଏଲ୍ ସାବତ ମୋନିକାଙ୍କୁ ବିବାହ କରିଥିଲେ । କୁନ୍ତଳା କୁମାରୀଙ୍କ ପିତାଙ୍କ ନାମ ଡାନିଏଲ ସାବତ ଓ ମାତାଙ୍କ ନାମ ମୋନିକା ସାବତ ଥିଲା । ଦାନିଏଲ୍ ଛତିଶଗଡର ଜଗଦଲପୁର ଗ୍ରାମରେ ପ୍ରଥମେ ରହୁଥିଲେ ଏବଂ ପରେ ଅଧିକ ବେତନ ପାଇ ବର୍ମାକୁ ବଦଳି ହୋଇଥିଲେ ।

୧୯୦୧ ମସିହା ଫେବ୍ରୁଆରି ୮ ତାରିଖରେ ଜଗଦଳପୁର ଗ୍ରାମରେ କୁନ୍ତଳା କୁମାରୀ ସାବତ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଜନ୍ମର ଅଳ୍ପଦିନ ପରେ ତାଙ୍କ ପରିବାର ବର୍ମା ଚାଲି

 

ଯାଇଥିଲେ ଓ କୁନ୍ତଳାଙ୍କୁ ୧୪ ବର୍ଷ ହେବା ପର୍ଯ୍ୟନ୍ତ ସେଠାରେ ଥିଲେ । ପାଖରେ କୌଣସି ଓଡ଼ିଆ ବିଦ୍ୟାଳୟ ନଥିବାରୁ କୁନ୍ତଳା କୁମାରୀ ସ୍କୁଲରୁ ହିନ୍ଦୀ, ମାଆଙ୍କ ଠାରୁ ଓଡ଼ିଆ ଓ ତାଙ୍କ ପିତାଙ୍କ ଠାରୁ ଇଂରାଜୀ ଶିକ୍ଷା କରୁଥିଲେ ।

ସେଠାରେ କୁନ୍ତଳା କୁମାରୀଙ୍କ ପିତା ତାଙ୍କ ମାଉସୀଙ୍କ ସହ ପୁନର୍ବିବାହ କରିବାରୁ ତାଙ୍କ ମାତା ସମେତ ତିନି ଝିଅ ଓ ଦୁଇ ପୁଅ ଓଡ଼ିଶାର ଖୋର୍ଦ୍ଧା ଜିଲ୍ଲାକୁ ଫେରିଆସିଥିଲେ । ବର୍ମାରୁ ଫେରିବା ପରେ କୁନ୍ତଳା କୁମାରୀ ନିଜ ମାତାଙ୍କ ସହ କିଛି ଦିନ ନିମନ୍ତେ ଖୋର୍ଦ୍ଧାରେ ରହିଥିଲେ । କୁନ୍ତଳା କୁମାରୀଙ୍କ ଦୁଇ ଭାଇ ସାମୁଏଲ୍ ଓ ନିଥାନିଏଲ୍ ଖୋର୍ଦ୍ଧା ହାଇସ୍କୁଲରେ ନାମ ଲେଖାଇ ପଢିବାକୁ ଲାଗିଲେ ।

ତାପରେ ୧୯୧୭ ମସିହାରେ କୁନ୍ତଳା କୁମାରୀ କଟକ ରେଭେନ୍ସା ଗାର୍ଲ୍ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ବାର୍ଷିକ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତିର୍ଣ୍ଣ ହୋଇଥିଲେ ।

ସେ ରେଭେନସା ବାଳିକା ବିଦ୍ୟାଳୟରେ ଶିକ୍ଷା ଲାଭ କଲା ପରେ ୧୯୧୮ ମସିହାରେ କଟକ ମେଡିକାଲ ସ୍କୁଲରେ ନାମ ଲେଖାଇଲେ । କଟକ ଡାକ୍ତରୀ ବିଦ୍ୟାଳୟରେ (ବର୍ତ୍ତମାନ ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ବିଦ୍ୟାଳୟ) ଡାକ୍ତରୀ ଶିକ୍ଷା ଗ୍ରହଣ କରି ୧୯୨୧ ମସିହାରେ ସ୍ୱର୍ଣ୍ଣ ପଦକ ସହ ଏଲ୍.ଏମ୍.ପି, ଡିଗ୍ରୀ ପାଇ ଉତ୍ତୀର୍ଣ୍ଣ ହୋଇଥିଲେ । ସେ ଯୁଗରେ ନାରୀ ଶିକ୍ଷା ଆଦୌ ନ ଥିଲା । କିନ୍ତୁ ନିଜର ଦୃଢ ମନୋବଳ ଯୋଗୁ ସେ ଓଡିଶାର ପ୍ରଥମ ମହିଳା ଡକ୍ଟର ଡିଗ୍ରି ହାସଲ କରିଥିଲେ ।

ଡାକ୍ତର କୈଳାସ ରାଓଙ୍କ ପ୍ରତି ତାଙ୍କର ସୃଷ୍ଟି ହୋଇଥିବା ଆକର୍ଷଣ କ୍ରମେ ଅନୁରାଗରେ ପରିଣତ ହୋଇଥିଲା । ସେ କୈଳାସ ରାଓଙ୍କ ଉଦ୍ଦେଶ୍ୟରେ ଲେଖି ତାଙ୍କ

 

ପାଖକୁ ପଠାଇଥିବା କବିତାର କିଛି ଅଂଶ -

ତୁମ୍ଭ ପୂଜା ପାଇଁ ସଖା ହେ ! ସଜାଡିଛି ବେଦିକା,
ଶୁଦ୍ଧ ଶାନ୍ତ ହୋଇ ବସିଛି ଦୀନା ତବ ସେବିକା ।
ତୁମ୍ଭେ ଆସ ଆସ ବୋଲି ତ ନିତି ଡାକୁଛି କେତେ,
ଯେତେ ହେଉଅଛି ନିରାଶ ପ୍ରେମ ବଢୁଛି ତେତେ ।

ପରବର୍ତ୍ତୀ ସମୟରେ ୧୯୨୮ ମସିହାର ସେ କେନ୍ଦ୍ରାପଡା ଜିଲ୍ଲାର କୃଷ୍ଣଚନ୍ଦ୍ର ବ୍ରହ୍ମଚାରୀଙ୍କ ସହିତ ବିବାହ କରିଥିଲେ ।

ସେ ପେଶାରେ ଡାକ୍ତର ଥିଲେ ମଧ୍ୟ ନିଶାରେ କବୟିତ୍ରୀ ଥିଲେ ।

"ସେଫାଳି ପ୍ରତି" କବିତାରେ ସେ ପ୍ରକୃତିର ଶୋଭା, ବିଭୁ ପ୍ରେମ ଓ ଜାତୀୟ ଭାବନା ଉପରେ ଲେଖିଥିଲେ :

ପଙ୍କେ ପଦ୍ମ ଗଢିଅଛି ବିଧାତା କି ଯତନେ,
ଶାମୁକା ଗରଭେ ନିହିଅଛି ମୁକ୍ତା ରତନେ,
କଳାମେଘ କଳେବର ସୌଦାମିନୀ ଶୋଭା ଧରେ,
କଳା କୋକିଳ କଣ୍ଠରେ ପୂରିଅଛି ପୀୟୁଷ,
ତୁଚ୍ଛ ଭବେ ନୁହେଁ କିଛି, କ୍ଷୁଦ୍ର ତୋର ସଦୃଶ୍ୟ ।

କୁନ୍ତଳା କୁମାରୀ ପରଦା ପ୍ରଥା, ବାଲ୍ୟ ବିବାହ ଓ ମହିଳା ପ୍ରଭେଦ ବିରୋଧରେ ପ୍ରତିବାଦ କରି ଲେଖୁଥିଲେ । ଜାତିପ୍ରଥା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ଏତଦବ୍ୟତୀତ ବିଧବା ବିବାହ ଓ ନାରୀ ସଶକ୍ତିକରଣ ନିମନ୍ତେ ସେ କାମ କରୁଥିଲେ । ଜାତୀୟ ସ୍ୱାଧୀନତା ଆନ୍ଦୋଳନରେ ସେ ଥିଲେ ଜଣେ ଉଜ୍ଜ୍ୱଳତମ ତାରକା ।

 

କୁନ୍ତଳା କୁମାରୀ ସାବତଙ୍କ 'ତାରା ପ୍ରତି' କବିତା ପରେ 'ଶେଫାଳି ପ୍ରତି', 'କମଳ ପ୍ରତି' ଓ ପୂଜା କବିତା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହେଲା ।

'ଶେଫାଳୀ ପ୍ରତି' କବିତାରେ ସେ ବର୍ଣ୍ଣନା କରିଛନ୍ତି -

'ତୋ' ପରି କ୍ଷୁଦ୍ର ମୁହିଁ 'ତୋ' ପରି କ୍ଷଣିକ,
ହସେ,ରସେ,ବାସେ ମାତ୍ର ଫୁଟିଅଛି ଘଡିକ ।

୧୯୩୮ ମସିହା ଅଗଷ୍ଟ ୨୩ ତାରିଖରେ ଲିଭିଯାଇଥିଲା ଉତ୍କଳର ପ୍ରଦୀପ । ସେହି ମହୀୟସୀ ମହିଳାଙ୍କ ବିୟୋଗରେ ସମଗ୍ର ଓଡିଶା ଶୋକାଗ୍ରସ୍ତ ହୋଇଥିଲେ ମଧ୍ୟ ତାଙ୍କ ସାହିତ୍ୟ ସାଧନା, ଅନ୍ୟର ସେବା ଓ ଦେଶ ମାତୃକାର ଉନ୍ନତି ତଥା ପରାଧୀନତାର ଶିକୁଳିରୁ ମୁକ୍ତ କରିବା ପାଇଁ ତାଙ୍କର ଅବଦାନ ଚିର ସ୍ମରଣୀୟ ହୋଇ ରହିଛି ଓ ରହିବ । ତାଙ୍କ କୃତିତ୍ୱକୁ ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳୀ !

 

# ଯଥାର୍ଥରେ ସାହିତ୍ୟ



କିରଣ ସ୍ୱାଇଁ

ସାହିତ୍ୟ କଣ ? କେବଳ ତିନି ଚାରିଟା ଶବ୍ଦର ସମ୍ମିଶ୍ରଣ କିମ୍ବା ଯାହା ସମ୍ୟକ୍ ଭାବରେ ହିତ ସାଧନ କରେ ନା ସମାଜର ଦର୍ପଣ ! ସାହିତ୍ୟ କଣ ହୋଇପାରେ ? କୌଣସି ବିଷୟ ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ଏହା ବୁଝିବା ଆବଶ୍ୟକ ଯେ ତା'ର ଉଦ୍ଦେଶ୍ୟ କଣ ? ଉକ୍ତ ବିଷୟର ପ୍ରାସଙ୍ଗିକତା କଣ ? ତାହାକୁ ଆମେ ପଢୁ ବା ଲେଖୁ କାହିଁକି ? ଯିଏ ହିତର କଥା କହେ, ଯାହାଦ୍ୱାରା ବା ଯାହାପାଇଁ କିମ୍ବା ଯେଉଁଠାରେ ହିତର କଥା ହୁଏ ତାହାକୁ ସାହିତ୍ୟ କୁହାଯାଏ । ଏବେ ପ୍ରଶ୍ନ ଉଠିପାରେ ଯେ, କାହାର ହିତ ସମ୍ବନ୍ଧୀୟ କଥା ? ନିଜ ହିତର କଥା ତ ସମସ୍ତେ ଚିନ୍ତା କରନ୍ତି – ଏହା ତ ସ୍ୱାର୍ଥ ହେଇଗଲା । ନିଜ ବିଷୟରେ ତ ପଶୁପକ୍ଷୀ ସମସ୍ତେ ମଧ୍ୟ ଚିନ୍ତା କରନ୍ତି, ସମସ୍ତ ବ୍ୟକ୍ତି ନିଜ ହିତ ବିଷୟରେ ଭାବନ୍ତି । ତେବେ ଖାଲି ନିଜ ବିଷୟରେ ଚିନ୍ତା କରିବା କଣ ସାହିତ୍ୟ ? – ନା ସମ୍ପୂର୍ଣ୍ଣ ଚରାଚର ଜଗତ ବା ସମଗ୍ର ସୃଷ୍ଟି ଯାହାକିଛି ବି ଆମେ ଦେଖୁ, ଶୁଣୁ, ବୁଝୁ, ଅନୁଭବ କରୁ ଆଉ ଏ ସବୁ ପ୍ରତି ପ୍ରେମ, କରୁଣା ଏବଂ ସମସ୍ତଙ୍କର କଲ୍ୟାଣର କଥା ଭାବିବା, ଚିନ୍ତା କରିବା, ଦେଖିବା ଇତ୍ୟାଦି ଯେଉଁ ଭାବ-ଭାବନା ଆସେ ତାହା ସାହିତ୍ୟରେ ଆସେ ।

ସାହିତ୍ୟର ଭାବ ଅବ୍ୟକ୍ତ, ତାହା ଅନୁଭବ୍ୟ ବିଷୟ । ଯେତେବେଳେ

 

ଆମେ କୌଣସି କବିତା, ଗଳ୍ପ, ତଥା ଉପନ୍ୟାସ ଆଦି ପଢୁ କିମ୍ବା କୌଣସି ଚଳଚ୍ଚିତ୍ର ଦେଖୁ ଅଥବା କୌଣସି ସଙ୍ଗୀତ ଶୁଣୁ, ସେତେବେଳେ ପାର୍ଥକ୍ୟ ଏହା ଆସେ ଯେ ଗୀତ ଶୁଣିବା ଆଗରୁ, ଉପନ୍ୟାସ ପଢ଼ିବା ଆଗରୁ, କାହାଣୀ ପଢ଼ିବା ପୂର୍ବରୁ ଆମେ ଯେଉଁ ଭାବରେ ଥାଉ କାହାଣୀ ପଢ଼ିବା ପରେ ଆଉ କିଛି ଭାବରେ ରୂପାନ୍ତରିତ ହେଉ । ଫିଲ୍ମ ମଧ୍ୟ ସାହିତ୍ୟର ଏକ ଅଂଶ ; ସେମିତି ଫିଲ୍ମଟିଏ ଦେଖିବା ପୂର୍ବରୁ ଆମେ ଯାହା ଥାଉ ଫିଲ୍ମ ଦେଖି ସାରିବା ପରେ ଅନ୍ୟ କିଛି ଥାଉ । ଆମେ ଆମ ଭିତରେ କିଛି ବଦଳିଲା ଭଳି ଅଭିବ୍ୟକ୍ତି, କିଛି ପରିବର୍ତ୍ତନ, କିଛି ଶାନ୍ତି, ସିଦ୍ଧାନ୍ତ ଆଦି ପ୍ରମୁଖ ଭାବନା ଓ ଚେତନା ଅନୁଭବ କରୁ ଏବଂ ଏହିସବୁ ଭାବନା ସଂଚାଳିତ ହୁଏ ସାହିତ୍ୟ ଦ୍ୱାରା । ଅର୍ଥାତ୍ ସାହିତ୍ୟ ଜୀବନକୁ ସମୃଦ୍ଧ କରେ, ଜୀବନର ବିଜ୍ଞାନ ଅଟେ । ଅନ୍ୟ ସବୁ ବିଷୟରେ ଆମେ ତଥ୍ୟ ପଢୁ, ତାର୍କିକତା ଦେଖୁ; କିନ୍ତୁ ସାହିତ୍ୟ ଏଭଳି ଏକ ବିଷୟ ଅଟେ ଯାହା ସିଧାସଳଖ ଜୀବନର କଥା କହେ, ଜୀବନ ସହ ଜଡ଼ିତ ଥାଏ । ରାଜନୀତି, ଅର୍ଥନୀତି ଆଦି ପଢ଼ିବା ବେଳେ କଣ କେତେବେଳେ ଆଖିରେ ଅଶ୍ରୁ ଆସେ ? କିନ୍ତୁ କୌଣସି ଚଳଚ୍ଚିତ୍ର ଦେଖିଲେ ବା କୌଣସି ରାଷ୍ଟ୍ରଭକ୍ତିମୂଳକ ଗୀତ ଶୁଣିନେଲା ପରେ ନିଜ ଆଖିରେ ଆପେ ଆପେ ଅଶ୍ରୁ ଆସିଯାଏ । ତେଣୁ ସାହିତ୍ୟର ସମ୍ବନ୍ଧ ସିଧା ମନୁଷ୍ୟର ହୃଦୟ ସହ ଜଡ଼ିତ । ସାହିତ୍ୟ ମନୁଷ୍ୟ ହୃଦୟକୁ ପରିଷ୍କାର କରେ ଓ ହୃଦୟରୁ ହୃଦୟ ଯାଏ ହୃଦୟର ଭାଷା ଅଟେ । ସାମାନ୍ୟ ଅର୍ଥରେ ସାହିତ୍ୟ ମନୁଷ୍ୟକୁ ଜୀବନ ଜିଇଁବାର ବିବେକ ପ୍ରଦାନ କରେ, ଉଦାହରଣ ସ୍ୱରୂପ – ଗୋଟିଏ ଛୁରୀ; ଛୁରୀର କାମ କଣ ପନିପରିବା କାଟିବା, ଛୋଟମୋଟ ଜିନିଷ କାଟିବାରେ ବ୍ୟବହୃତ ହୋଇ କାର୍ଯ୍ୟକୁ ସରଳ କରେ, ହେଲେ କୌଣସି ବ୍ୟକ୍ତି ସେହି ଛୁରୀରେ କାହାର ହତ୍ୟା ବି ତ କରିପାରେ ! ବିଜ୍ଞାନ କେବଳ ଛୁରୀ ବନେଇଛି ଆମ ଜୀବନକୁ ସରଳ କରିବା ପାଇଁ, କିନ୍ତୁ ସେହି ଛୁରୀର

 

ବ୍ୟବହାର କେମିତି କରାଯିବ ଏହି ବିବେକ, ଏହି ବୁଦ୍ଧି, ଏ ସମ୍ବେଦନା ଯିଏ ଦିଏ ତାହା ହେଉଛି – ସାହିତ୍ୟ । ତେଣୁ ଲେଖକମାନେ, ବିଚାରକମାନେ କହିଛନ୍ତି ମନୁଷ୍ୟ ହିଁ ସାହିତ୍ୟର ଲକ୍ଷ୍ୟ, ଅର୍ଥାତ୍ ସାହିତ୍ୟର ଲକ୍ଷ୍ୟ ହେଉଛି ମନୁଷ୍ୟ ନିର୍ମାଣ । କୌଣସି କମ୍ପାନୀରୁ ସାହିତ୍ୟ ମନୁଷ୍ୟ ନିର୍ମାଣ କରେ ନାହିଁ, ମନୁଷ୍ୟର ଚେତନାକୁ ତାହା ଆଘାତ କରେ, ଜାଗୃତ କରେ, ତା'ର ଆଖପାଖକୁ ଦେଖିବା ଚିନ୍ତା କରିବାର ଏକ ଜୀବନ୍ତ ଦୃଷ୍ଟିଶକ୍ତି ପ୍ରଦାନ କରେ । ଯେଉଁଠାରେ ଆମେ ଏକ ସୁଚକ୍ଷୁରେ ସବୁ ଦେଖିପାରୁ, ରୂପର ଭିନ୍ନ ରୂପକୁ ଦେଖୁ, ସମସ୍ତଙ୍କ ପ୍ରତି ସମ୍ବେଦନଶୀଳ ହେଉ ଏହି ଶକ୍ତି ଆମକୁ ସାହିତ୍ୟ ହିଁ ପ୍ରଦାନ କରେ । ଫକୀର ମୋହନଙ୍କ 'ରେବତୀ' ଗଳ୍ପ ତ ଅଧିକାଂଶ ଲୋକ ପଢ଼ିଛନ୍ତି ତ ସେହି କାହାଣୀ ପଢ଼ିବା ପରେ ଆମ ଭିତରେ ଯେଉଁ ଭାବ-ଭାବାନ୍ତର, ପରିବର୍ତ୍ତନ, ସହାନୁଭୂତି, ସମ୍ବେଦନା ଆଦିର ଯେଉଁ ଜାଲ ସୃଷ୍ଟି ହୁଏ, ମନୁଷ୍ୟର ଅବସ୍ଥାରେ, ଚେତନାରେ ଯେଉଁ କିଛି କିଛି ଜାଗୃତି ସୃଷ୍ଟି ହୁଏ ତାହା ଆଣିଥାଏ ସାହିତ୍ୟ । ତେଣୁ ସାହିତ୍ୟ ଆମେ କଣ ପାଇଁ ପଢ଼ିଥାଉ ? କାରଣ ଆମେ ମଣିଷ ହେବା ପାଇଁ ଚାହୁଁ । ଆମେ ଜୀବନକୁ ମୁକ୍ତ ଦୃଷ୍ଟିରେ ଦେଖିବାକୁ ଚାହୁଁ । ଜୀବନର ପ୍ରତିଟି ସମୟରେ ଆମକୁ ପ୍ରେମ, ସହାନୁଭୂତି, ଦୟା, କ୍ଷମା, କରୁଣା ଇତ୍ୟାଦି ଭାବନାର ସହିତ ବଞ୍ଚିବା ପାଇଁ ଯିଏ ପ୍ରେରଣା ଦିଏ ତାହା ହେଉଛି ସାହିତ୍ୟ । ଜ୍ଞାନ ବିଜ୍ଞାନର ଯେତେ ବି ଶାଖା ଅଛି ତାହା ଇତିହାସ ହେଉ ଅବା ରାଜନୀତି ହେଉ – ସବୁର ଅନ୍ତିମ ଉଦ୍ଦେଶ୍ୟ ହେଉଛି ମନୁଷ୍ୟ ନିର୍ମାଣ; କିନ୍ତୁ ସାହିତ୍ୟ ସିଧା ସିଧା ମନୁଷ୍ୟ ନିର୍ମାଣର କଥା କହେ ।

ଭିନ୍ନ ଭିନ୍ନ ବିଦ୍ୱାନ୍ ଭିନ୍ନ ଭିନ୍ନ ପରିଭାଷାରେ ସାହିତ୍ୟକୁ କରିଛନ୍ତି ପରିଭାଷିତ । 'ସାହିତ୍ୟ' ଶବ୍ଦ ସପ୍ତମ-ଅଷ୍ଟମ ଶତାବ୍ଦୀରେ ପ୍ରୟୋଗ କରାଗଲା । ଏହା ପୂର୍ବରୁ 'ସାହିତ୍ୟ' ସ୍ଥାନରେ 'କାବ୍ୟ' ଶବ୍ଦ ପ୍ରଚଳିତ ଥିଲା । ଆମର ପ୍ରାଚୀନ ଭାରତୀୟ କାବ୍ୟଶାସ୍ତ୍ରରେ ଯେଉଁ

 

ବିଦ୍ୱାନ୍ ମାନେ ଅଛନ୍ତି ସେମାନେ କାବ୍ୟକୁ ନେଇ ଗଭୀର ଚର୍ଚ୍ଚା କରିଛନ୍ତି; କିନ୍ତୁ ଭାଷା ବିଜ୍ଞାନର ଯେଉଁ ନିୟମ ରହିଛି ଯେବେ ଗୋଟିଏ ଶବ୍ଦର ପ୍ରୟୋଗରେ ଦୁଇଟି ଅର୍ଥ ପ୍ରକାଶ ହେବାକୁ ଲାଗିଲେ ଅବଶ୍ୟ ଗୋଟିଏ ଅର୍ଥ ରୂଢ଼ ବା ସୀମିତ ହୋଇ ରହେ । ପ୍ରଥମେ ସମସ୍ତ ପ୍ରକାର ରଚନା ପ୍ରତି 'କାବ୍ୟ'ର ନାମ ପ୍ରୟୋଗ ହେଉଥିଲା, କିନ୍ତୁ ସପ୍ତମ-ଅଷ୍ଟମ ଶତାବ୍ଦୀରେ ଯେତେବେଳେ 'ସାହିତ୍ୟ' ଶବ୍ଦର ପ୍ରଚଳନ ଆରମ୍ଭ ହେଲା ସେତବେଳେ ସାହିତ୍ୟରେ ସବୁ ପ୍ରକାରର ରଚନା ଭିନ୍ନ ଭିନ୍ନ ସ୍ୱରୂପ ନେଇ ପ୍ରକାଶିତ ହେଲା । ପ୍ରଥମେ 'କାବ୍ୟ'ର ଅର୍ଥ ସୀମିତ ଥିଲା ତାହା କେବଳ ପଦ୍ୟଯୁକ୍ତ ରଚନାକୁ ବୁଝାଉଥିଲା । ପରବର୍ତ୍ତୀ ସମୟରେ ଯୁଗ ବଦଳିବା ସହିତ ସାହିତ୍ୟ ମଧ୍ୟ ଗଳ୍ପ, କବିତା, ଜୀବନୀ, ଆତ୍ମଜୀବନୀ, ପ୍ରବନ୍ଧ ଆଦି ବିବିଧ ସ୍ୱରୁପରେ ଉଦ୍ଭାଷିତ ହେଲା । ଯେତେବେଳେ ବିଦ୍ୱାନ୍ ମାନଙ୍କ ପରିଭାଷା କଥା ଆସେ ତେବେ କେତେକ ପ୍ରମୁଖ ବିଦ୍ୱାନଙ୍କ ଉଦାହରଣ ଏଠାରେ ନିଆଯାଇପାରେ । ଯେମିତି ସାହିତ୍ୟକାର ପ୍ରେମଚନ୍ଦ ସାହିତ୍ୟକୁ ଜୀବନର ଆଲୋଚନା କହିଛନ୍ତି । ଆଲୋଚନାର ଅର୍ଥ ସୁସ୍ଥ ଦୃଷ୍ଟିରେ ଜୀବନକୁ ଦେଖିବା, ସିଧା ସିଧା ଜୀବନ ସହିତ ଜଡ଼ିତ ହେବା । ସାହିତ୍ୟ ମନୁଷ୍ୟର ଆତ୍ମାକୁ ପ୍ରଜ୍ୱଳିତ କରେ, ଜୀବନକୁ ସତ୍ ପଥରେ ଅଗ୍ରଗାମୀ କରାଏ, ମନୁଷ୍ୟ ଭିତରେ ପରଦୁଃଖକାତରତା ଭରେ – ପରଦୁଃଖକାତରତା ଅର୍ଥ ଅନ୍ୟର ଦୁଃଖରେ ଦୁଃଖୀ ହେବା । ଏବେ ସମସ୍ୟା କଣ ଆସୁଛି ? ଅନ୍ୟର ସୁଖରେ ଲୋକ ଦୁଃଖୀ ହେଉଛନ୍ତି ଆଉ ସାହିତ୍ୟ ଆମକୁ କଣ କହେ ? ଅନ୍ୟକୁ ନିଜ ଭଳି ଦେଖ, ଅନ୍ୟର ଦୁଃଖକୁ ନିଜ ଦୁଃଖ ଭାବ, ଅନ୍ୟର ସୁଖରେ ସାମିଲ ହୁଅ । ଆମେ ଏବେ ଭାବି ପାରିବା ସାହିତ୍ୟର ଯେଉଁ ଉଦ୍ଦେଶ୍ୟ ରହିଛି ତା'ର ଯଦି ୧୦୦ ପ୍ରତିଶତରୁ ୩/୫ ପ୍ରତିଶତ ବି ଗ୍ରହଣ କରି ପାରିବା ତେବେ ଏ ହିଂସା, ମରାମରି, ହତ୍ୟା, ଦୁର୍ଘଟଣା ଆଦି ପୃଥିବୀରେ ପ୍ରସାରିତ ହେଉଥିବା ଅଘଟଣ ସବୁ

 

ନିଶ୍ଚୟ ହ୍ରାସ ପାଇଯିବ । ସାହିତ୍ୟ ନିଜର ଗମ୍ଭୀର ଉଦ୍ଦେଶ୍ୟରେ ସର୍ବଦା ହିତର କଥା କହେ । ସାହିତ୍ୟ ମନୁଷ୍ୟ ହୃଦୟର ବିକାଶ ଅଟେ । ସାହିତ୍ୟ ତାହା କରେ ଯାହାଦ୍ୱାରା ସମାଜ, ପୃଥିବୀ ସୁନ୍ଦର ହେବ, ମନୁଷ୍ୟ ପ୍ରେମ, ଅହିଂସା, ଏକତାରେ ରହିପାରିବ । ଜଣକ ଭିତରେ ଅନ୍ୟ ଜଣଙ୍କ ପ୍ରତି କଲ୍ୟାଣର ଭାବନା ସୃଷ୍ଟି କରେ ସାହିତ୍ୟ । ପ୍ରେମଚନ୍ଦ ଆଉ ଏକ ସୁନ୍ଦର କଥା କହିଛନ୍ତି – ସାହିତ୍ୟ ରାଜନୀତିର ପଛେ ଚାଲୁଥିବା ସତ୍ୟ ନୁହେଁ, ସାହିତ୍ୟ ରାଜନୀତିର ଆଗରେ ମଶାଲ ଦେଖାଇ ଚାଲୁଥିବା ସତ୍ୟ ଅଟେ । ରାଜନୀତି ଓ ସମାଜକୁ ଦିଗ ଦେବାରେ ସାହିତ୍ୟ ଓ ସାହିତ୍ୟିକଙ୍କର ଭୂମିକା ରହିଛି । ମୁକ୍ତିର ସ୍ୱପ୍ନ, ସ୍ୱତନ୍ତ୍ରତାର ସ୍ୱପ୍ନ ସର୍ବ ପ୍ରଥମେ ସାହିତ୍ୟ ମାଧ୍ୟମରେ ଦେଖା ଦେଇଛି । ଭାରତୀୟ ମୁକ୍ତି ସଂଗ୍ରାମ ପରି ଓଡ଼ିଶାର ମୁକ୍ତି ସଂଗ୍ରାମ କ୍ଷେତ୍ରରେ ଫକୀରମୋହନ, ମଧୁସୂଦନ, ଗଙ୍ଗାଧର, ରାଧାନାଥ, ନନ୍ଦକିଶୋର ବଳ, ଗୋପବନ୍ଧୁ ପ୍ରମୁଖ ଅନେକ ସାହିତ୍ୟ ସ୍ରଷ୍ଟାଙ୍କ ସାହିତ୍ୟର ଲେଖନୀର ଅବଦାନ କୁ ଅସ୍ୱୀକାର କରାଯାଇନପାରେ । ଏ ସାହିତ୍ୟ ସୃଷ୍ଟି ଯୋଗୁଁ ହିଁ ସ୍ୱତନ୍ତ୍ର ଓଡ଼ିଆ ଭାଷା ବିକଶିତ ହୋଇଛି, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇଛି । ତେବେ ମୋଟାମୋଟି ଭାବରେ ସାହିତ୍ୟ ଜୀବନକୁ, ପ୍ରତ୍ୟେକ ବ୍ୟକ୍ତିକୁ ପ୍ରେମ କରେ, ମଣିଷର ଚେତନାକୁ ବିସ୍ତୃତ କରେ, ତା' ମଧ୍ୟରେ ଜାଗରଣ ସୃଷ୍ଟି କରେ, ତା'ର ବିଚାରରେ ଜାଗୃତି ଆଣିବାର ପ୍ରୟାସ କରେ । ସାହିତ୍ୟ ଏକ ଉନ୍ନତ ମଣିଷ ଗଢ଼େ କେବଳ ଆଚାରରେ ନୁହଁ ବିଚାରରେ ମଧ୍ୟ ।

"ସାହିତ୍ୟ ଓ ଜୀବନ" ପ୍ରବନ୍ଧରେ ବାଗ୍ମୀ ବିଶ୍ୱନାଥ କର କହିଛନ୍ତି – "ଜୀବନରୁ ସାହିତ୍ୟର ଉତ୍ପତ୍ତି ଏବଂ ଜୀବନ ହିଁ ସାହିତ୍ୟୋନ୍ନତିର ମୂଳ । ଯେଉଁଠାରେ ଜୀବନ, ସେହିଠାରେ ଜୀବନ ସାହିତ୍ୟ । ଜୀବନ୍ତ ସମାଜ ନିତ୍ୟ ନବ ନବ ଭାବ ଲାଭ କରି ତାହାକୁ ସାହିତ୍ୟାକାରରେ ନିବଦ୍ଧ କଲେ, ତାହାର ଜୀବନ ଶକ୍ତି ସମାଜ ମଧ୍ୟରେ ସଞ୍ଚାରିତ ହୁଏ ।

 

ସାହିତ୍ୟର ଆଦର୍ଶକୁ ଅନୁସରଣ କରିପାରିଲେ ଉନ୍ନତି ଅବଶ୍ୟାମ୍ଭାବୀ" । ସାହିତ୍ୟ ଜୀବନ ବଞ୍ଚିବାର ଧୈର୍ଯ୍ୟ ଓ କୌଶଳ ଶିଖାଏ । ଏହା ସତ୍ୟ ଯେ ଆତ୍ମସୁଧାର କରିବା ବିନା ଅନ୍ୟର ସୁଧାର କଥା ଚିନ୍ତା କରିବା କେବେବି କୌଣସିଠାରେ ଉଚିତ୍ ନୁହଁ । ସମାଜ ସୁଧାର କଥା ଚିନ୍ତା କରିବା ଗୋଟେ ଜଟିଳ କଥା ହେଇପାରେ; କିନ୍ତୁ ଆତ୍ମସୁଧାର କରିପାରିବା ମନୁଷ୍ୟ ପକ୍ଷେ ବଡ଼ କଥା । ସାହିତ୍ୟ ଏକ ଉପଲବ୍ଧି ଅଟେ । ଏହା ଆତ୍ମମୂଲ୍ୟାଙ୍କନ କରେ । ଏହା ସ୍ୱାଭାବିକ ଯେ ମନୁଷ୍ୟ ମନରେ ଅନେକ ଭାବନା ଆସେ । ତେଣୁ କାହାକୁ ନେଇ କାହା ମନରେ ଈର୍ଷା ଥିଲେ, କାହା ପ୍ରତି କ୍ରୋଧ ଆସିଲେ ଯଦି ମନୁଷ୍ୟ ସେଠାରେ ଟିକେ ଅଟକି ଯଦି ବିଚାର କରିବ ନା ଏହା ମୋର ତ୍ରୁଟି ଅଟେ ତେବେ ସେ ନିଜକୁ ସୁଧାରି ପାରିବ । ଯେଉଁ ଦିନ ମଣିଷ ନିଜର ଆତ୍ମ ମୂଲ୍ୟାଙ୍କନ କରିବା ଆରମ୍ଭ କରିବ, ନିଜ ଭୁଲକୁ ପ୍ରତିବାଦ କରିବା ଆରମ୍ଭ କରିବ ସେହଦିନଠାରୁ ନିରନ୍ତର ଉତ୍ତରୋତ୍ତର ଭାବରେ ମଣିଷର ବିକାଶ ହେବ ।

ସାହିତ୍ୟକୁ ସମାଜର ଦର୍ପଣ କାହିଁକି କୁହାଯାଇଛି ? ସମାଜରେ ଯାହକିଛି ବି ଘଟେ ତାହା ସାହିତ୍ୟ ଆମ ଆଗରେ ଆଣି ରଖେ, ଏହା ସହିତ ସମାଜର ଆଦର୍ଶ ରୂପ କଣ ହେବା ଉଚିତ୍ ଏହା ସାହିତ୍ୟ ହିଁ ଦେଖାଏ । ସାହିତ୍ୟ ଓ ସମାଜର ପରସ୍ପର ପ୍ରତି ଏକ ଗାଢ଼ ନିବିଡ଼ ସମ୍ପର୍କ ରହିଛି । ସାହିତ୍ୟ ମଣିଷର ଚିତ୍ତବୃତ୍ତି, ପ୍ରବୃତ୍ତି, ମନୋଭାବ, ଭାବ ଆଦିର ଦିଶା ନିର୍ଣ୍ଣୟ କରୁଥିବା ଏକ ପ୍ରତିବିମ୍ବ ଅଟେ । ପ୍ରତ୍ୟେକ ସମୟର ସାହିତ୍ୟ ସେହି ସମୟର ପ୍ରତିବିମ୍ବ । ତେଣୁ ବର୍ତ୍ତମାନ ଯେତେବେଳେ ଆମେ ସାରଳା ସାହିତ୍ୟ ପଢୁ, ପଞ୍ଚସଖା ଯୁଗ, ରୀତି ଯୁଗ ପ୍ରଭୃତିର ସାହିତ୍ୟ ଯେତେବେଳ ପଢୁ ସେତେବେଳେ ସେହି ଯୁଗମାନଙ୍କର ପ୍ରତିବୃତ୍ତି, ଉଦ୍ଦେଶ୍ୟ, ଜ୍ଞାନ, ଅନୁଭବ ଆଦି ସମଗ୍ର ଭାବକୁ ଦେଖିପାରୁ । ଭିନ୍ନ ଭିନ୍ନ

 

ସମୟରେ ମଣିଷର ଚିତ୍ତବୃତ୍ତିର ପରିବର୍ତ୍ତନ ସହିତ ସାହିତ୍ୟର ଚିତ୍ତବୃତ୍ତିରେ ମଧ୍ୟ ଦେଖାଦେଇଛି ପରିବର୍ତ୍ତନ । ଯେମିତି ଯେମିତି ସମାଜ କଡ଼ ଲେଉଟାଉଥାଏ, ସମାଜର ସ୍ୱରୂପରେ ପରିବର୍ତ୍ତନ ଆସେ ସେମିତି ସାହିତ୍ୟର ସ୍ୱରୁପରେ ମଧ୍ୟ ପରିବର୍ତ୍ତନ ଆସୁଥାଏ । ଆଦିରୁ ଅନ୍ତ ଯାଏ ଏହି ଚିତ୍ତବୃତ୍ତିର ପରମ୍ପରାକୁ ପରଖି କରି ସାହିତ୍ୟ ପରମ୍ପରା ସହିତ ତା'ର ସାମଞ୍ଜସ୍ୟ ହିଁ ଦେଖାଇଥାଏ । ଏହା ହେଉଛି ସାହିତ୍ୟର ଗମ୍ଭୀରତା, ଏହି ରୂପରେ ସାହିତ୍ୟ ପରିଭାଷିତ । ଅଲଗା ଅଲଗା ପ୍ରବୃତ୍ତିକୁ ନେଇ ସାହିତ୍ୟ ଓ ସମାଜର ଏକ ଅବିନଶ୍ୱର ସମ୍ବନ୍ଧ ରହିଛି । ଗୋଟେ ପ୍ରକାରରେ କୁହାଯାଇପାରେ ସାହିତ୍ୟ ସମାଜଠାରୁ ନିଜ ପାଇଁ ସ୍ରୋତ ସଂଗ୍ରହ କରେ, ତତ୍ତ୍ୱ ନିଏ ଓ ତା'ର ବାର୍ତ୍ତାକୁ ରଚନାରେ ରୂପ ଦିଏ । ସାହିତ୍ୟ ସମାଜର ଅନ୍ଧାରକୁ ଖୋଜେ ଓ ତା'ର ପରୀକ୍ଷା କରି ସେ ଅନ୍ଧାରକୁ ସମାପ୍ତ କରେ । ବ୍ୟକ୍ତି ଯାହା ସାମାନ୍ୟ ଦୃଷ୍ଟିରେ ଦେଖିପାରେ ନାହିଁ ସାହିତ୍ୟ ଦୃଷ୍ଟିରେ ସେ ସବୁକିଛି ଦେଖିପାରେ । ତେଣୁ ସାହିତ୍ୟକାରର ଏକ ବଡ଼ ଉଦ୍ଦେଶ୍ୟ ଥାଏ ଯେ, ନିଜ ସମୟର ଅନ୍ତର୍ନିହିତ ସତ୍ୟକୁ ଅନୁସନ୍ଧାନ କରି, ତା'ର ରୂପ ପରିଗ୍ରହକୁ ପ୍ରସ୍ତୁତ କରି ସମାଜ ଆଗରେ ଥୋଇବା । ତେଣୁ ସାହିତ୍ୟର ପରିଭାଷା ନିହାତି ଭାବରେ ଗଭୀର ଓ ଗଭୀରତର ।

ଠିକଣା - ବହିଆପଦର, ବରପାଲି, ଜିଲ୍ଲା - ବରଗଡ଼

 

# ଧ୍ୱଂସାଭିମୁଖୀ ପୃଥିବୀ



ଅମୃତନାରାୟଣ
ଶତପଥୀ

ଧ୍ୱଂସାଭିମୁଖୀ ପୃଥିବୀ ତହିଁରେ ଆମର ସ୍ଥାନ

ସମ୍ପ୍ରତି ଗୋଟିଏ ପରେ ଗୋଟିଏ ପ୍ରାକୃତିକ ବିପର୍ଯ୍ୟୟରେ ଅତିଷ୍ଠ ପୃଥିବୀ ଏବେ ମରଣାନ୍ତକ ଭାଇରସ୍ ଆକ୍ରମଣରେ ଆତଙ୍କିତ । ମହାମାରୀର ବିଭିଷିକା ତା'ର ଲୋଲୁପ ଜିହ୍ୱା ନେଇ ମନୁଷ୍ୟକୁ କବଳିତ କରିବାରେ ଲାଗିଛି । ପ୍ରତିଷେଧକ ଭାବେ ମନୁଷ୍ୟ ଆପଣା ଛାଏଁ ଗୃହବନ୍ଦୀ ହୋଇସାରିଲାଣି । ତଥାପି କିଛି ଲୋକ କୌତୁହଳ ବଶତଃ ନିଜର ମୁଣ୍ଡ ଉପରକୁ କରି ବାହାରେ ବୁଲି ଯେଉଁ ଆତ୍ମବଡିମା ଦେଖାଇବାକୁ ଇଚ୍ଛୁକ ହେଉଥିଲେ ସେମାନେ ଏବେ ପୋଲିସର ଲାଠିମାଡ ତଥା ସରକାରଙ୍କ କଟକଣା ଯୋଗୁଁ ବାଟକୁ ଚାଲି ଆସିଲେଣି । ବିଦେଶ ଲୋକଙ୍କ ପ୍ରତି ମନରେ ଥିବା ସମ୍ମାନ ଏବେ ବିପରୀତ ଭାବରେ ପରିଣତ ଏହା ସୁସ୍ପଷ୍ଟ । ଲୋକମାନେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ପାଇଁ ଯେତେ ହଇରାଣ ହେଉଛନ୍ତି ସବୁଠୁ ଅଧିକ ବ୍ୟତିବ୍ୟସ୍ତ ନିଶାଖୋର ଯୁବ ପିଢ଼ି । ମଦ, ପାନ, ଚା, ଗୁଟଖା ଆଦି ଦୋକାନ ବନ୍ଦ ହୋଇ ସେମାନଙ୍କ ସମସ୍ୟା ବଢ଼ାଇ ଦେଲାଣି । ପଶୁପକ୍ଷୀ, ବୁଲାକୁକୁର ଖାଦ୍ୟାଭାବରେ ହନ୍ତସନ୍ତ ହୋଇ ମୃତବତ୍ ରାଜରାସ୍ତାରେ ବୁଲି ଦୁର୍ଭିକ୍ଷର ଅୟମାରମ୍ଭର ସୂଚନା ଦେଇ ସାରିଲେଣି । ସତରେ ପୃଥିବୀ ଏବେ ଧ୍ୱଂସାଭିମୁଖୀ ପଥରେ ଅଗ୍ରସର ଆଉ

 

ଆମ୍ଭେମାନେ ସେହି ପଥର ପଥିକ । ଏହାର ଏକମାତ୍ର ସମାଧାନ ହେଉଛି ସତର୍କତା ତଥା ସଚେତନତା ଆତ୍ମବିଶ୍ୱାସ ତଥା ଈଶ୍ୱର ବିଶ୍ୱାସ ରୂପକ ବୀଜ ନିଜ ମନ ମସ୍ତିଷ୍କର ଭୂମିରେ ରୋପଣ କରି ଦୃଢ଼ମନା ହୋଇ ସବୁ ସମସ୍ୟାର ସମାଧାନର ପନ୍ଥା ଖୋଜିବା ସର୍ବାଦୌ ବିଧେୟ । ବିଶ୍ୱଶାନ୍ତି ସୌହାର୍ଦ୍ଧ୍ୟ ଓ ଉନ୍ନତି ପାଇଁ ଈଶ୍ୱରଙ୍କୁ ଜୀବନ ସମର୍ପିତ କରିବା ଉଚିତ ।

ନୟାପଲ୍ଲୀ, ଜୟଦେବ ବିହାର, ଭୁବନେଶ୍ୱର ।

# ଆନନ୍ଦଦାୟୀ ଶିକ୍ଷା ପ୍ରତ୍ୟେକ ଛାତ୍ରର ଅଧିକାର



ଶଙ୍କର ବିଶ୍ୱାଳ

ଉତ୍ତମ ଶିକ୍ଷାର ମୂଳଦୁଆ ଜଣେ ଭଲ ଶିକ୍ଷକ । ଏକ ସଠିକ୍ ପାଠ୍ୟକ୍ରମ ଏବଂ ସଶକ୍ତିକରଣ ସଂସ୍କୃତି ଶିକ୍ଷକଙ୍କୁ ସକ୍ଷମ କରେ । ଏହାକୁ ବାସ୍ତବ ରୂପ ଦେବା ପାଇଁ କାର୍ଯ୍ୟ କରିବା ପରିବର୍ତ୍ତେ, ଶିକ୍ଷା କ୍ଷେତ୍ରରେ କରାଯାଇଥିବା କାର୍ଯ୍ୟର ଏକ ବଡ଼ ଅଂଶ ଅନ୍ୟାନ୍ୟ ବିଷୟ ଉପରେ । କେତେକ ଯାହା କେବଳ ବିଭ୍ରାନ୍ତକାରୀ ଏବଂ କେତେକ ପ୍ରତିକ୍ରିୟାଶୀଳ । ଶିକ୍ଷାଦାନ ଏବଂ ଶିକ୍ଷଣ ପାଠ୍ୟକ୍ରମର ମୂଳଦୁଆରେ, ଅଂଶ ଗ୍ରହଣକାରୀ ମାନେ ଛାତ୍ର ଶିକ୍ଷଣ ଉପରେ ଧ୍ୟାନ ଦେଇ ଏକାଡେମିକ୍ ବିକାଶ ସହିତ କାର୍ଯ୍ୟ କରନ୍ତି । ପାଠ୍ୟକ୍ରମ ସମୟରେ, ପ୍ରତ୍ୟେକ ଅଂଶଗ୍ରହଣକାରୀ ଏକ ଏକାଡେମିକ୍ ଶିକ୍ଷଣ ମୁହୂର୍ତ୍ତର ବିକାଶ କରନ୍ତି, ଏବଂ ଅନ୍ତିମ କାର୍ଯ୍ୟ ହେଉଛି ସେହି ଏକାଡେମିକ୍ ବିକାଶମୂଳକ କାର୍ଯ୍ୟ ଉପରେ ଏକ ଶିକ୍ଷାଗତ ପ୍ରତିଫଳନ ଲେଖିବା ।

ଏକ ଗୁଣାତ୍ମକ ଭିତ୍ତିଭୂମି ଶିକ୍ଷା ଛାତ୍ରମାନଙ୍କୁ ସେମାନଙ୍କର ପୂର୍ଣ୍ଣ ସାମର୍ଥ୍ୟକୁ ଆଗକୁ ବଢାଇବାରେ ସାହାଯ୍ୟ କରିଥାଏ । ମୂଳ ପର୍ଯ୍ୟାୟ ହେଉଛି ଯେଉଁଠାରେ ସେମାନେ ମୂଲ୍ୟବାନ ଜୀବନ କୌଶଳ ଶିଖନ୍ତି ଏବଂ ବିକାଶ କରନ୍ତି ଯାହା ସେମାନଙ୍କୁ ବାସ୍ତବ ଦୁନିଆରେ ସାହାଯ୍ୟ କରିବ, ସାମାଜିକ ଏବଂ ଭାବପ୍ରବଣ ମୁକାବିଲା କୌଶଳ ସହଯୋଗ କରିଥାଏ ।

 

ଶିକ୍ଷା କ୍ଷେତ୍ର ବା ଶିକ୍ଷା ବ୍ୟବସ୍ଥା ହେଉଛି ଅନୁଷ୍ଠାନର ଏକ ଗୋଷ୍ଠୀ (ଶିକ୍ଷା ମନ୍ତ୍ରଣାଳୟ, ସ୍ଥାନୀୟ ଶିକ୍ଷା କର୍ତ୍ତୃପକ୍ଷ, ଶିକ୍ଷକ ତାଲିମ ପ୍ରତିଷ୍ଠାନ, ବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ଇତ୍ୟାଦି) ଯାହାର ମୂଳ ଉଦ୍ଦେଶ୍ୟ ହେଉଛି ଶିଶୁ ଏବଂ ଯୁବକମାନଙ୍କୁ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷା ପ୍ରଦାନ କରିବା । ଏଥିରେ ବିଭିନ୍ନ ପ୍ରକାରର ଲୋକ (ପାଠ୍ୟକ୍ରମ ବିକାଶକାରୀ, ଇନ୍‌ସପେକ୍ଟର, ବିଦ୍ୟାଳୟର ପ୍ରଧାନଶିକ୍ଷକ, ଶିକ୍ଷକ, ବିଦ୍ୟାଳୟର ନର୍ସ, ଛାତ୍ର ଇତ୍ୟାଦି) ଜଡିତ । ବିଭିନ୍ନ ଅନୁଷ୍ଠାନ ଅନୁଯାୟୀ ଏହି ଅନୁଷ୍ଠାନଗୁଡ଼ିକ ଭିନ୍ନ ହୋଇପାରେ ।

ବିଦ୍ୟାଳୟଗୁଡ଼ିକ ଶିକ୍ଷା ଶିକ୍ଷା ପ୍ରଦାନ କରନ୍ତି, ଅବଶିଷ୍ଟ ଶିକ୍ଷା ବ୍ୟବସ୍ଥାର ସମର୍ଥନ ସହିତ ବିଭିନ୍ନ ଉପାଦାନ ଯେପରିକି ଶିକ୍ଷା ନୀତି ଏବଂ ନିର୍ଦ୍ଦେଶାବଳୀ - ଯାହା ବିଦ୍ୟାଳୟ ନୀତିକୁ ଆବଶ୍ୟକ କରିପାରିବ - ପାଠ୍ୟକ୍ରମ ଏବଂ ଶିକ୍ଷଣ ସାମଗ୍ରୀ, ସେବା ଶିକ୍ଷକ ତାଲିମ କାର୍ଯ୍ୟକ୍ରମ । ବିଦ୍ୟାଳୟ ପରିବେଶ - ଉଭୟ ଶାରୀରିକ (ଭିତ୍ତିଭୂମି) ଏବଂ ମାନସିକ (ବିଦ୍ୟାଳୟ ଜଳବାୟୁ) - ବିଦ୍ୟାଳୟ ନୀତି ଦ୍ୱାରା ମଧ୍ୟ ପରିଚାଳିତ ହୋଇଥାଏ ଯାହାକି ବିଦ୍ୟାଳୟରେ ପଢୁଥିବା ସମୟରେ ଛାତ୍ରଛାତ୍ରୀଙ୍କ ଉନ୍ନତି ନିଶ୍ଚିତ କରିବା ଉଚିତ୍ । ଅର୍ଥନୈତିକ ସହଯୋଗ ଏବଂ ବିକାଶ ସଂଗଠନ ଜାଣିବାକୁ ପାଇଛି ଯେ ସ୍ନାତକୋତ୍ତର ପରେ ଛାତ୍ରଛାତ୍ରୀମାନେ ମୂଳ ବିଷୟଗୁଡ଼ିକରେ ପାରଦର୍ଶୀ ହେବା ନିଶ୍ଚିତ କରିବା ପାଇଁ ପ୍ରଧାନ ଶିକ୍ଷକଙ୍କ ପୂର୍ଣ୍ଣ ଅଧିକାର ଏବଂ ଦାୟିତ୍ୱ ଥିବାବେଳେ ବିଦ୍ୟାଳୟଗୁଡ଼ିକ ସର୍ବୋତ୍ତମ ପ୍ରଦର୍ଶନ କରିବାକୁ ଆଗ୍ରହ ପ୍ରକାଶ କରନ୍ତି । ଛାତ୍ରମାନଙ୍କ ଦକ୍ଷତା ଉପରେ ନଜର ରଖିବା ପାଇଁ ସରକାର ନିଜକୁ ସୀମିତ ରଖିବା ଉଚିତ୍ ।

ଏଥିମଧ୍ୟରେ ପିତାମାତା, ସ୍ଥାନୀୟ ସମ୍ପ୍ରଦାୟ, ଧାର୍ମିକ ନେତା, ଏନଜିଓ, ସ୍ୱାସ୍ଥ୍ୟ, ଶିଶୁ ସୁରକ୍ଷା, ନ୍ୟାୟ ଏବଂ ଆଇନ ପ୍ରଣୟନ (ପୋଲିସ), ଗଣମାଧ୍ୟମ ଏବଂ ରାଜନୈତିକ ନେତୃତ୍ୱ

 

ଜଡିତ ହିତାଧିକାରୀ ଅନ୍ତର୍ଭୁକ୍ତ ।

ଆନୁଷ୍ଠାନିକ ଶିକ୍ଷାର ଆକୃତି, ପଦ୍ଧତି, ଶିକ୍ଷିତ ସାମଗ୍ରୀ - ପାଠ୍ୟକ୍ରମ - ସହିତ ରାଜନୈତିକ ନିଷ୍ପତ୍ତି ନେଉଥିବା ବ୍ୟକ୍ତିଙ୍କ ଦ୍ୱାରା ନିଷ୍ପତ୍ତି ନିଆଯାଏ । ଯାହାଦ୍ୱାରା ଶିକ୍ଷାର ଅନେକ ପ୍ରକାରର ଉନ୍ନତି କରିବା ସଫଳତା ହସଲ କରିପାରିବ ।

ଏକ ଆନନ୍ଦଦାୟକ ଶିକ୍ଷଣ ଅଭିଜ୍ଞତା ମସ୍ତିଷ୍କରେ ନୂତନ ସ୍ନାୟୁ ପଥ ସୃଷ୍ଟି କରେ ଏବଂ ବିଷୟବସ୍ତୁର ଗ୍ରହଣକୁ ଆଣିଥାଏ । ଶିକ୍ଷାର୍ଥୀମାନେ ଅଧିକ ଶୀଘ୍ର ଏବଂ ଅଧିକ ଗଭୀର ଭାବରେ ଶିଖନ୍ତି ଯେତେବେଳେ ସେମାନଙ୍କର ଭାବନା ସ୍ପର୍ଶ ହୁଏ ଏବଂ ଶିକ୍ଷଣ ଅଭିଜ୍ଞତା ସେମାନଙ୍କ ଶିକ୍ଷକ ଏବଂ ଅନ୍ୟ ସାଥୀ ଶିକ୍ଷାର୍ଥୀମାନଙ୍କର ସକରାତ୍ମକ ଭାବନା ଏବଂ ପ୍ରତିକ୍ରିୟା ସହିତ ଆସିଥାଏ । ଯାହା ଦ୍ୱାରା ଶିକ୍ଷଣ ସହାୟକରେ ଶିକ୍ଷାର୍ଥୀର ମାନସିକ ଗୁଣ ତଥା ତାହାର ଶିକ୍ଷ୍ୟାପ୍ରତି ଥିବା ବ୍ୟକ୍ତିଗତ ଲକ୍ଷ୍ୟ ଓ ମନର ଅବେଗ ବା ଆନ୍ଦୋଳିତ ଅବସ୍ଥାଟି ତାହାକୁ ଶିକ୍ଷଣ ସାମଗ୍ରୀକ ଅଗ୍ରଗତିରେ ତ୍ୱରାନିତ୍ୱ କରାଇବ ।

ଆନନ୍ଦଦାୟକ ଶିକ୍ଷଣ ହେଉଛି ଶିକ୍ଷାର ଏକ ଧାରା ଯେଉଁଥିରେ ଶିକ୍ଷାର୍ଥୀମାନଙ୍କୁ ଆନନ୍ଦଦାୟକ ଉପାୟରେ ଆଶ୍ଚର୍ଯ୍ୟର ଭାବନା ଅନୁଭବ କରିବାର ସୁଯୋଗ ଦିଆଯାଏ, ସେମାନଙ୍କର ମନର କୌତୁହଳକୁ ବଢାଇଥାଏ, ଯେତେବେଳେ ସହପାଠୀ / ସାଥୀ ଗୋଷ୍ଠୀ ଏବଂ ଶିକ୍ଷକମାନଙ୍କର ଏକ ସହାୟକ ସମ୍ପ୍ରଦାୟ ମାଧ୍ୟମରେ ଅର୍ଥପୂର୍ଣ୍ଣ ବିଷୟବସ୍ତୁ ସହିତ କଥାବାର୍ତ୍ତା ହୁଏ । ଯାହାଦ୍ୱାରା ସେ ତାର ଶୈଖିକ ମନୋବୃତ୍ତି ଆଗକୁ ଯିବା ସଙ୍ଗେ ସଙ୍ଗେ ସେ ତାର ଏହି ପ୍ରକାର ପ୍ରଶ୍ନଗତ ମନେ ଭାବକୁ ପରିପ୍ରକାଶ କରାଇ ନିଜକୁ ଦୃଢ ମନୋବଳ ସହ କାର୍ଯ୍ୟ କରିବ । ଆନନ୍ଦିତ ଶିକ୍ଷାର ଅର୍ଥ ହେଉଛି ଶିଖିବା ସମୟରେ ସୁଖ ଏବଂ ଆନନ୍ଦର ଉପାଦାନ ଆଣିବା । ଏହା ଶିକ୍ଷାର୍ଥୀ ଏବଂ ଶିକ୍ଷକମାନଙ୍କୁ ଚାପ ମୁକ୍ତ ପରିବେଶରେ ଶିକ୍ଷାଦାନ-

 

ଶିକ୍ଷଣକୁ ଅନୁଭବ କରିବାକୁ ସକ୍ଷମ କରେ । ଯେତେବେଳେ ପିଲା ଅନୁଭବ କରେ ଯେ ସେ କିଛି ନୂଆ ସୃଷ୍ଟି କରିଛନ୍ତି, ସେତେବେଳେ ସେ ତାର ପରିଶ୍ରମକୁ ଆହୁରି ଦ୍ୱିଗୁଣିତ କରିବା ସଙ୍ଗେ ସଙ୍ଗେ ନିଜର ଅଧିକାର କୁ ସାବ୍ୟସ୍ତ କରିବାରେ ଲାଗିପଡେ ଯେପରି କିଛି ପ୍ରଶ୍ନଗତ ସନ୍ଦେହ ନିଜ ମନର ଚାପରେ ନ ରଖି ତାକୁ କୌଣସି ପ୍ରକାର ନିଦ୍ୱନ୍ଦ ସହକାରେ ଶିକ୍ଷକଙ୍କ ଆଗରେ ଉପସ୍ଥାପନ କରାଇବ ।

ଆନନ୍ଦଦାୟକ ଶିକ୍ଷାର ଆମର ସାମ୍ପ୍ରତିକ ସଂକ୍ଷିପ୍ତ ପରିଭାଷା ହେଉଛି, "ଏକ ସ୍ନେହପୂର୍ଣ୍ଣ ତଥା ସହାୟକ ସମ୍ପ୍ରଦାୟରେ ଅର୍ଥପୂର୍ଣ୍ଣ ବିଷୟବସ୍ତୁର ଜଡିତ, ସଶକ୍ତିକରଣ ଏବଂ ଖେଳାତ୍ମକ ଶିକ୍ଷା । ଆନନ୍ଦଦାୟକ ଶିକ୍ଷା ପ୍ରକ୍ରିୟା ମାଧ୍ୟମରେ ଜଣେ ଛାତ୍ର ସର୍ବଦା ଆତ୍ମ ଏବଂ ବିଶ୍ୱର ଜ୍ଞାନକୁ ଉନ୍ନତ କରିଥାଏ । "ଆମେ ଜାଣୁ, ତଥାପି, ଆନନ୍ଦ ବ୍ୟକ୍ତିଗତ ଭାବରେ ଅନୁଭୂତ ହୁଏ ଏବଂ ସେହି ପ୍ରସଙ୍ଗଟି ବହୁତ ଗୁରୁତ୍ୱପୂର୍ଣ୍ଣ । ଆମେ ଏହା ମଧ୍ୟ ସ୍ୱୀକାର କରୁ ଯେ କ୍ଷେତ୍ରର ବିଶେଷଜ୍ଞମାନେ ସାମାନ୍ୟ ଭିନ୍ନ ବର୍ଣ୍ଣନାକାରୀ ବ୍ୟବହାର କରିପାରନ୍ତି । ଆମ ପାଇଁ କ'ଣ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଆମର ବାର୍ତ୍ତାଳାପ ହେଉଛି - ଆମେ ଶିକ୍ଷଣ ପ୍ରକ୍ରିୟାରେ ଏବଂ ଜୀବନର ଫଳାଫଳ ଭାବରେ ଆନନ୍ଦକୁ ଗୁରୁତ୍ୱ ଦେଉ ।

ଆନନ୍ଦ ପ୍ରକୃତ ଶିକ୍ଷାର ରୋମାଞ୍ଚକରକୁ କାବୁ କରେ - କୌତୁହଳ, ଉତ୍ସାହ, ସହଯୋଗ, ସଂଯୋଗ, ପ୍ରୟାସ, ମଜା, ଗର୍ବ, ବାଣ୍ଟିବା । ଆନନ୍ଦିତ ଶିକ୍ଷା ଉଭୟ ଶିକ୍ଷଣ ପ୍ରକ୍ରିୟା ସହିତ କଥା ହୁଏ, ଯେଉଁଠାରେ ଯଥେଷ୍ଟ ପ୍ରମାଣ ଅଛି ଯେ କୌଶଳ ଉପରେ ଏକ ଧ୍ୟାନ ଯାହାକୁ ଆମେ ଆନନ୍ଦିତ ଭାବରେ ବର୍ଣ୍ଣନା କରିବୁ ତାହା ଅଧିକ ପ୍ରଭାବଶାଳୀ ଅଟେ, ଏବଂ ଏକ ଫଳାଫଳକୁ ଆମେ ବିଶ୍ୱାସ କରୁ ଯେ ଉଚ୍ଚ ମୂଲ୍ୟବାନ ହେବା ଉଚିତ ଆନନ୍ଦ ।

ଗୁଡିଆଳୀ, କବିସୂର୍ଯ୍ୟ ନଗର, ଗଞ୍ଜାମ +୨ କଳା ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ , ଆଠଗଡ ପାଟଣା

 

# ବସନ୍ତ ଆସିଲେ ଗାଆଁ କଥା ଭାରି ମନେ ପଡେ



ଅନନ୍ତ କୁମାର

ଆଜି ଦି ପଇସା ଚାଖଣ୍ଡେ ପେଟ ପାଇଁ ଏବଂ ନିଜ ପରିବାର ପାଇଁ ନିଜ ଜନ୍ମ ମାଟି ଗାଆଁ ଛାଡି ବିଦେଶ ଆସିଛି । କିନ୍ତୁ ରହିବାକୁ ଏଠି ମନ ନାହିଁ ଏ ଦେହ ସିନା ବିଦେଶରେ ହେଲେ ଏ ମନ ପ୍ରାଣ ସେହି ଧୂଳି ବାଲି ମାଟି ଗାଁରେ ଅଛି । ଆଜି ବସନ୍ତ ଆସିଛି ଫଗୁଣ ଆସିଛି କିନ୍ତୁ ଏ ବିଦେଶୀ ମାଟିରେ ଟିକେ ବସନ୍ତର ବାଆ କି ଫଗୁଣର ସ୍ପର୍ଶ ଲାଗୁନି । ସୋସିଆଲ ମିଡିଆରେ ମୋ ଗାଁ କୁ ଦେଖି ମନ ବହୁତ ଝୁରି ହେଉଛି ଇଛା ହେଉଛି ପୁଣି ଫେରି ଯାଆନ୍ତିକି ସେହି ପୁରୁଣା ଗାଁ କୁ ହଜି ଯାଆନ୍ତିକି ଅତୀତର ବହି ଭିତରେ ଯେଉଁଠି ମୁଁ ଆଉ ମୋ ଗାଁର ଲତା ବନ ଗିରି ରହନ୍ତି । ଆଜି ବସନ୍ତ ଆସିଛି ଫଗୁଣକୁ ନେଇ ଭାବିଲା ବେଳକୁ ଗାଁ କଥା ମନେ ପଡି ଯାଉଛି ଆଉ ଆଖିରେ ଲୁହ ମନରେ କୋହ ଭରି ଯାଉଛି କାହିଁକି ନା ଗାଁ ର ସେ ନଈପଠାର ତରୁଲତାର ଶବୁଜିଆ ବେଶ ଏବଂ ନଈର କୁଳୁ କୁଳୁ ଶବ୍ଦ ଲାଗୁଛି ସତେ ଯେମିତି ଏବେବି ମୋ ଆଖି ସାମ୍ନାରେ ନାଚୁଛି । ବସନ୍ତ ଋତୁର ଆଗମନେ ଧୀରେ ଧୀରେ ଗାଆଁରୁ ଶୀତ ଛାଡି ଚାଲି ଯାଏ ଆଉ ଫଗୁଣର ସ୍ପର୍ଶରେ ତରୁଲତା ମାନ ନୂତନ ବେଶରେ ସଜାଇ ହୁଅନ୍ତି ଏପରି ଲାଗେ ଯେପରି ଝିଅଟିଏ ନବ ବଧୂ ହେଇ ଶାଶୁଘରେ ସଜେଇ ହେଇ ଆସିଛି । ଗାଁର ବନ ଉପବନେ ସବୁଠି ଅପୂର୍ବ ମହକ ଭାସିଆସେ

 

ବସନ୍ତର ମିଠା ମଳୟରେ ଏବଂ ଫଗୁଣର ସ୍ୱର୍ଶରେ ମନରେ ସଞ୍ଚାର ହୁଏ କେତେ ପ୍ରେମ ଉନ୍ମାଦନା ସେ ପ୍ରେମକୁ ପାଇବା ପାଇଁ ପାଗଳ ହୁଏ ଗାଁର ପ୍ରକୃତି ଗାଁର ନବ ତରୁଣ ତରୁଣୀ । ଅନ୍ଧକାର ହଟିଲେ ଫର୍ଚ୍ଚା ହେଲେ  ପୂରୁବ ଦିଗରୁ ଦିନ ମଣିକୁ ଦେଖି କାକ ପିକ କେତେ ପକ୍ଷୀ କିଚିରି ମିଚିରି ଶବ୍ଦରେ ଗାଁ ର ପ୍ରକୃତିକୁ ଆହୁରି ମନଲୋଭା କରନ୍ତି । କୋଇଲିର କୁହୁ କୁହୁ ମିଠା ଗୀତ ତରୁଲତା ଡାଳେ ମଧୁମକ୍ଷିକାର ମଧୁ ହରଣ ଫୁଲ ଡାଳେ ଆହା କି ସୁନ୍ଦର ପରିବେଶ ଗାଁ ର ଆଜିବି ମନେ ପଡୁଛି । ଗାଁ ର ସାଙ୍ଗ ସାଥୀ ନଈ କୂଳରେ ଭୋଜି ସତରେ ମନକୁ ବିଚଳିତ କରୁଛି ହୃଦୟକୁ ବ୍ୟଥିତ କରୁଛି । ବସନ୍ତର ଆଗମନେ ଦକ୍ଷିଆ ବାଆ ଆହା କି ସୁଲୁ ସୁଲିଆ ଲାଗେ ଲାଗେ ଯେପରି ଜେଜେମା ପାଖରେ ବସି ବିଞ୍ଚଣାରେ ବିଞ୍ଚି ଦେଉଛି । ଫଗୁଣର ପ୍ରଥମ ଛୁଆଁରେ ଆମ୍ର, ଶିମିଳି, ଚନ୍ଦନ, କୃଷ୍ଣ ଚୁଡା ଆଦି ତରୁଲତାର ସାଜ ସଜା ଦେଖିଲେ ଆଖି ଲାଖି ଯାଏ କିଛି କ୍ଷଣ ପାଇଁ ଆଉ ବସନ୍ତର ମଳୟରେ ମନ ହଜି ଯାଏ ପ୍ରେମିକା ପାଖରେ । ସତରେ ବହୁତ ସୁନ୍ଦର ସେ ଦିନ ଥିଲା ଏଇ ବସନ୍ତର ଖରାବେଳେ ଗାଁରେ ଦ୍ୱିପହର କଂସାଏ ପଖାଳ ସାଙ୍ଗକୁ ବଢି ଚୁରା ଆଉ ଦେଶୀ ପିଆଜକୁ କଞ୍ଚା ଲଙ୍କା ପେଟ ଭରି ଯାଉଥିଲା ଆନନ୍ଦରେ କହିଲା ବେଳକୁ ପାଟିରେ ଲାଳ ଆସି ଯାଉଛି ଆଉ ଭାବିଲେ ପୁରୁଣା କଥା ଆଖିରେ ଲୁହ ଧାର ଧାର ହେଇ ଛୁଟି ଯାଉଛି ।ଏଇ ଫଗୁଣରେ କେତେ ଗାଁ ମେଳନ କେତେ ବିଭାନ ଗାଁ ଦାଣ୍ଡରେ କେତେ ଫଗୁ ଖେଳ ସତରେ ମନକୁ ଆନ୍ଦୋଳିତ କରୁଛି ମନେ ହେଉଛି ବିଦେଶରୁ ଆଉ ଥରେ ମୋ ଗାଁ ମାଟିକୁ ଫେରି ଯାଆନ୍ତି କି ଆଉ ଥରେ ସବୁ ଉପେଭାଗ କରନ୍ତି କି । କିନ୍ତୁ ପୁଣି ଫେରି ହେଉନି ସେ ସବୁ ଅତୀତ ବହିରେ ସ୍ମୃତି ହେଇ ଲିପିବଦ୍ଧ ରହି ଯାଇଛି । ଆଜି ବିଦେଶରେ ଟଙ୍କା ରୋଜଗାର କରୁଛି ପରିସ୍ଥିତି ପାଇଁ ବଡ ବଡ ହୋଟେଲରେ ଖାଦ୍ୟ ଖାଉଛି ଭୋକ ମେଣ୍ଟାଇବା ପାଇଁ କିନ୍ତୁ ଗାଁର

 

ସେହି ସୁଆଦିଆ ଖାଇବା ପଖାଳ ମିଳୁନି କି ବସନ୍ତର ମଳୟ ଅନୁଭବ ହେଉନି କି ଫଗୁଣର ସ୍ୱରଶ ଏ ଦେହକୁ ଛୁଇଁ ଯାଉ ନାହିଁ  ଖାଲି ଦିଶୁଛି କୋଠା ବାଡି ଗାଡି ମଟର ଆଉ ବାଦ ହିଂସା  ।

ସତରେ ଭାରି ମନେ ପଡୁଛି ଝାଟି ମାଟି ଗାଁ ଘର ଛପର ଆଉ ବଉର ପଖାଳ କଂସା ବଢି ଚୁରା । ମନ ଝୁରି ହେଉଛି ଗାଁ ମାଟି ପାଇଁ

କାର୍ଯ୍ୟକାରୀ ସମ୍ପାଦକ

ଜାତୀୟ କବି ଲେଖକ ସଂଗଠନ

ତିହିଡି, ଭଦ୍ରକ

ଯୋଗାଯୋଗ-୮୩୩୯୯୩୯୯୨୯

 

# ବିଶେଷ ସୂଚନା

ଆହ୍ୱାନ ଇ-ପତ୍ରିକାର ଆଗାମୀ ସଂସ୍କରଣ : ଅପ୍ରେଲ୍ ୨୦୨୩

ଲେଖା ପଠାଇବାର ଶେଷ ତାରିଖ : ୩ ଅପ୍ରେଲ୍ ୨୦୨୩

ଆହ୍ୱାନ ଇ-ପତ୍ରିକାରେ ପ୍ରକାଶନ ହେତୁ ଆପଣଙ୍କ ଲେଖା ଗୁଡ଼ିକ ଓଡ଼ିଆରେ ଟାଇପ୍ କରି ୱାର୍ଡ଼ ଫାଇଲରେ ପଠାଇବେ । ହାତଲେଖା ଗ୍ରହଣୀୟ ହେବନାହିଁ । ଜାଣିଛି ଟାଇପ୍ କରିବା ଭାରି କଷ୍ଟସାଧ୍ୟ, କିନ୍ତୁ ସେତିକି ପରିମାଣର କଷ୍ଟ ମୋତେ ବି କରିବାକୁ ହୁଏ । ଆପଣ ଗୋଟିଏ ଆଲେଖ୍ୟ ଟାଇପ୍ କରିବାକୁ କଷ୍ଟ ଅନୁଭବ କରୁଛନ୍ତି, ଏଠି ଶତାଧିକ ଆଲେଖ୍ୟ ପହଞ୍ଚୁଛି, ସବୁ ଗୁଡ଼ିକ ଟାଇପ୍ କରିବା ଅସମ୍ଭବ ।

ଯଦି ଗଳ୍ପ ବା କାହାଣୀ କିମ୍ବା ପ୍ରବନ୍ଧ ପଠାଉଛନ୍ତି ତେବେ ଧ୍ୟାନ ଦିଅନ୍ତୁ, ପ୍ରତ୍ୟେକ ଶବ୍ଦ ମଧ୍ୟରେ କେବଳ ଗୋଟିଏ ଖାଲି ସ୍ଥାନ ଛାଡ଼ିବେ, କମା, ପୂର୍ଣ୍ଣଚ୍ଛେଦ, ଯୁକ୍ତାକ୍ଷର ଆଦି ବ୍ୟାକରଣ ତ୍ରୁଟି ପ୍ରତି ସାବଧାନ ରହି ଟାଇପ୍ କରିବେ । ବ୍ୟାକରଣଗତ ତ୍ରୁଟି ପାଇଁ ପ୍ରକାଶନରେ ଅହେତୁକ ବିଳମ୍ବ ହୁଏ । ତେଣୁ ଯଦି ସମ୍ଭବ ହେଉଛି ଆପଣଙ୍କ ନିକଟରେ ଥିବା କେହି ଓଡ଼ିଆ ବନ୍ଧୁଙ୍କ ଦ୍ୱାରା ନିଜ ଲେଖାକୁ ସଠିକ ଭାବରେ ପରୀକ୍ଷା କରି ନିଅନ୍ତୁ ।

ଲେଖା ସହିତ ନିଜର ଗୋଟିଏ ପାସପୋର୍ଟ୍ ଫଟୋ (ଯଦି ନାହିଁ, ତେବେ ଭଲ ଦେଖାଯାଉଥିବା ସୁନ୍ଦର ଫଟୋଟିଏ) ସହିତ ନିଜର ଠିକଣା ଲେଖି ପଠାଇବେ ।

ଅନେକ ବନ୍ଧୁ ଲେଖା ପଠାଇବା ବେଳେ ଲେଖାକୁ ଇମେଲ୍‌ର ସବଜେକ୍ଟ ଲାଇନ୍‌ରେ ଲେଖି ଦେଉଛନ୍ତି, ଏଥିପ୍ରତି ସତର୍କ ରହିବେ । ଲେଖା ମେସେଜ୍ ବକ୍ସରେ ହିଁ ପଠାଇବେ ।

ଆମର ଲେଖା ସଂଗ୍ରହ ଇମେଲ୍ : aahwaan@gmail.com

 

# ବିଶେଷ ସୂଚନା

ଦୟାକରି ପ୍ରତ୍ୟେକ ମାସର ସଂସ୍କରଣ ନିମନ୍ତେ କେବଳ ଗୋଟିଏ ବା ଦୁଇଟି ଲେଖା ହିଁ ପଠାନ୍ତୁ । ଯେକୌଣସି ବିଭାଗରେ କେବଳ ଗୋଟିଏ ଲେଖା ହିଁ ପ୍ରକାଶିତ ହେବ । କିଛି ବନ୍ଧୁ ଏକାଧିକ ଲେଖା ପଠାଇ ଆମକୁ ଚିନ୍ତାରେ ପକାଇ ଦେଉଛନ୍ତି । ଆମେ ସେ ମଧ୍ୟରୁ ଚୟନ କରିବାକୁ ଅସୁବିଧାର ସମ୍ମୁଖୀନ ହେଉଛୁ । ଏହାଦ୍ୱାରା ଆମ ଇମେଲ୍ ବକ୍ସ ଭର୍ତ୍ତି ହେଉଛି ଏବଂ ସମ୍ପାଦନା କାର୍ଯ୍ୟରେ ବାଧା ସୃଷ୍ଟି ହେଉଛି ।

ଅନେକଥର ଅନୁରୋଧ କରିବା ସତ୍ତ୍ୱେ ଯେଉଁ ଲେଖକ ଲେଖିକାମାନେ ନିଜର ଏକାଧିକ ଲେଖା ଆମ ଇମେଲ୍ ଠିକଣାରେ ପ୍ରେରଣ କରୁଛନ୍ତି ସେମାନଙ୍କ ଅବଗତି ନିମନ୍ତେ ଜଣାଇ ଦେବାକୁ ଉଚିତ୍ ମନେ କରୁଛି ଯେ ଯଦି କୌଣସି ଇମେଲ୍ ଠିକଣାରୁ ବାରମ୍ବାର ଅନେକ ଲେଖା ଆମ ଇମେଲକୁ ଆସେ, ତା ହେଲେ ଗୁଗୁଲ୍ ମେଲ୍ ବକ୍ସ ସେଇ ସବୁ ଲେଖାକୁ ସ୍ପାମ୍ ବା ଅନାବଶ୍ୟକ ଲେଖା ଭାବି ଆମର ମୁଖ୍ୟ ଇନବକ୍ସରୁ ହଟେଇ ଦେଇପାରେ ଯାହା ଫଳରେ ଆପଣଙ୍କ ଲେଖା ଆଦୌ ପ୍ରକାଶିତ ହୋଇ ପାରିବ ନାହିଁ । ତେଣୁ କେବଳ ଗୋଟିଏ କିମ୍ବା ସର୍ବାଧିକ ଦୁଇଟି ଲେଖା ହିଁ ପ୍ରତ୍ୟେକ ମାସରେ ପ୍ରେରଣ କରନ୍ତୁ ।

ହ୍ୱାଟ୍ସଆପ୍‌ରେ ଲେଖା ପଠାନ୍ତୁ ନାହିଁ । ଏହା ସ୍ୱୀକାର୍ଯ୍ୟ ହେବନାହିଁ । କେବଳ ଇମେଲ୍ ଦ୍ୱାରା ହିଁ ଲେଖା ପଠାନ୍ତୁ । ଆହ୍ୱାନ ଇ-ପତ୍ରିକାର ଆଣ୍ଡ୍ରଏଡ୍ ଆପ୍ ଡାଉନଲୋଡ୍ କରନ୍ତୁ ।

**ପତ୍ରିକାରେ ଥିବା ବ୍ୟାକରଣଗତ ତ୍ରୁଟି ପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।**

ଆମ ଇମେଲ୍ ଠିକଣା :

**aahwaan@gmail.com**

 

ଆହ୍ୱାନ ଇ-ପତ୍ରିକାରେ ପ୍ରକାଶନ ହେତୁ ଲେଖା ପଠାଉଥିବା ସମସ୍ତ ସାହିତ୍ୟିକ ବନ୍ଧୁଙ୍କୁ ବିନମ୍ର ଅନୁରୋଧ କରୁଛି, ଦୟାକରି ନିଜର ଲେଖାକୁ ଓଡ଼ିଆରେ ଟାଇପ୍ କରି ପଠାନ୍ତୁ । ଆପଣ ଚାହିଁଲେ ଆକୃତି / ଶ୍ରୀଲିପି / ଅପ୍ରାନ୍ତ / ଗୁଗୁଲ୍ ଓଡ଼ିଆ କିବୋର୍ଡ଼ ଦ୍ୱାରା ଟାଇପ୍ କରି ପଠାଇ ପାରିବେ ।












ସ୍କାନ୍ ହୋଇଥିବା ଛବି ଏବଂ ଟାଇପ୍ ହୋଇଥିବା ପିଡ଼ିଏଫ୍ ଫାଇଲ୍ ଗୁଡ଼ିକୁ ପୁଣିଥରେ ଟାଇପ୍ କରିବାକୁ ପଡୁଛି ଯାହା ଫଳରେ ପତ୍ରିକା ପ୍ରକାଶନରେ ଅହେତୁକ ବିଳମ୍ବ ହେଉଛି । ତେଣୁ ଆପଣଙ୍କ ଲେଖାକୁ ଓଡ଼ିଆରେ ଟାଇପ୍ କରି ଇମେଲ୍ କିମ୍ବା Microsoft Word File ରେ ହିଁ ପଠାନ୍ତୁ ।

ଆହ୍ୱାନ ଇ-ପତ୍ରିକାର ଓଡ଼ିଆ ପୋଡ୍‌କାଷ୍ଟ ସେବା ଏବେ ଉପଲବ୍ଧ । ଏଥିରେ ଆପଣ ଆହ୍ୱାନରେ ପ୍ରକାଶିତ କଥାବସ୍ତୁ ସମେତ ଅନେକ ଉପାଦେୟ କଥା ଶୁଣିପାରିବେ ।

# https://anchor.fm/aahwaan

Listen to Odia Podcast on https://anchor.fm/aahwaan